1949 (ଶକାବ୍ଦ 1910)


**କୃତଜ୍ଞତା**

ଆଇ. ଟି. ଡି. ସି
ଫଟୋ ଡିଭିଜନ, ସୂଚନା ପ୍ରସାରଣ ମନ୍ତ୍ରଣାଳୟ
ସୂଚନା ବିଭାଗ, ଆସାମ (ନୂଆ ଦିଲ୍ଲୀ)
ସୂଚନା ବିଭାଗ, ଆସାମ ରାଜଭବନ (ଶିଲଂ)
ପ୍ରକାଶନ ବିଭାଗ (ନୂଆ ଦିଲ୍ଲୀ)

FESTIVALS OF INDIA (*Oriya*)

**ମୂଲ୍ୟ : ଟ 18.50**

ଡାଇରେକ୍ଟର, ନ୍ୟାସନାଲ ବୁକ୍ ଟ୍ରଷ୍ଟ,ଇଣ୍ଡିଆ
A-5, ଗ୍ରୀନ୍ ପାର୍କ, ନୂଆ ଦିଲ୍ଲୀ-110016
କର୍ତ୍ତୃକ ପ୍ରକାଶିତ ।



# ଭାରତର ପର୍ବପର୍ବାଣୀ

ଅନୁବାଦ

ମହେଶ୍ୱର ମହାନ୍ତି

ବୁଦ୍ଧ ପୂର୍ଣ୍ଣିମା
ବିହୁ
ରକ୍ଷା ବନ୍ଧନ
ଓନାମ୍
ଇଦ୍
ଗଣେଶ ଚତୁର୍ଥୀ
ଦୁର୍ଗା ପୂଜା
ଦଶହରା
ଦୀପାବଳୀ
ବଡଦିନ
ଲୋହରୀ
ପୋଙ୍ଗଲ
ହୋଲି
ନବରୋଜ



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

# ବୁଦ୍ଧ ପୂର୍ଣ୍ଣିମା

ବିଭିନ୍ନ କାରଣରୁ ପର୍ବପର୍ବାଣିମାନ ପାଳନ କରାଯାଏ । ସେଗୁଡିକ ବିଭିନ୍ନ ଶ୍ରେଣୀ ଏବଂ ବିଭିନ୍ନ ସଂପ୍ରଦାୟର ଲୋକମାନଙ୍କୁ ଏକାଠି ହେବାରେ ସାହାଯ୍ୟ କରନ୍ତି, ଲୋକମାନଙ୍କ ମଧ୍ୟରେ ହସ କୌତୁକ ତଥା ପରସ୍ପର ସଦ୍‌ଭାବ ଆଣି ଦିଅନ୍ତି । ତା' ନ ହେଲେ ସେମାନଙ୍କର ଜୀବନ ଶୁଷ୍କ ଏବଂ ନୀରସ ହୋଇ ପଡନ୍ତା । ଆଉ ମଧ୍ୟ ଲୋକମାନେ କାଳ କ୍ରମେ ଯେଉଁ ବିଶେଷ ଘଟଣାଗୁଡିକ ଭୁଲି ଯାଆନ୍ତେ, ବର୍ଷ ପରେ ବର୍ଷ ସେଗୁଡିକ ସେମାନଙ୍କର ମନେ ପକାଇ ଦିଅନ୍ତି ।

ବୌଦ୍ଧ-ପାଞ୍ଜିରେ 'ବୁଦ୍ଧ ପୂର୍ଣ୍ଣିମା' ହେଉଛି ସବୁଠାରୁ ଅଧିକ ପବିତ୍ର ଦିବସ । ଏହା ବୌଦ୍ଧମାନଙ୍କର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ପର୍ବ ଏବଂ ଏହାକୁ ଖୁବ୍ ଆଗ୍ରହ ଉତ୍ସାହର ସହ ପାଳନ କରାଯାଏ । ପ୍ରତ୍ୟେକ ପର୍ବର ସ୍ୱତନ୍ତ୍ର ପାଳନ ବିଧି ଅଛି । ଏଇ ବିଧିରୁ ଏହାକୁ ପାଳନ କରୁଥିବା ଲୋକମାନଙ୍କର ଚାଲିଚଳଣ, ଧର୍ମବିଶ୍ୱାସ ଓ ଆଚାର ବିଚାର ଇତ୍ୟାଦି ସମ୍ପର୍କରେ ଜାଣି ହୁଏ ।

ଅବଶ୍ୟ କେହି କେହି ପଚାରି ପାରନ୍ତି ଯେ ବୁଦ୍ଧ ପୂର୍ଣ୍ଣିମା କେବଳ ବୌଦ୍ଧମାନଙ୍କ ଦ୍ୱାରା କାହିଁକି ପାଳନ କରାଯାଏ ? ଏହାର ଉତ୍ତର ସହଜ, କାରଣ ଏହା ସେମାନଙ୍କ ଧର୍ମର ପ୍ରତିଷ୍ଠାତା, ଭଗବାନ ବୁଦ୍ଧଙ୍କ ସହିତ ସଂପୃକ୍ତ । ଯଦିଓ ବୌଦ୍ଧମାନେ ପ୍ରତ୍ୟେକ ମାସର ପୂର୍ଣ୍ଣମୀକୁ ପବିତ୍ର ବୋଲି ମନେ କରନ୍ତି; ତଥାପି ବୈଶାଖ ପୂର୍ଣ୍ଣିମା (ଅପ୍ରେଲ-ମେ) ହେଉଛି ସବୁଠୁଁ ଅଧିକ ଗୁରୁତ୍ୱପୂର୍ଣ୍ଣ । କାରଣ ଏହି ଦିନଟିରେ ବୁଦ୍ଧଦେବ ଜନ୍ମ ଗ୍ରହଣ କରିଥିଲେ, ଜ୍ଞାନ ଲାଭ କରିଥିଲେ ଏବଂ ନିର୍ବାଣ ପାଇଁ ମୃତ୍ୟୁବରଣ କରିଥିଲେ । ଏହି ତିନୋଟି ବିଶିଷ୍ଟ ଘଟଣା ଗୋଟିଏ ଦିନରେ ଘଟିଥିବାରୁ ବୁଦ୍ଧ ପୂର୍ଣ୍ଣମୀର ମହତ୍ତ୍ୱ ବଢିଯାଇଛି ।

ଆମେ ପ୍ରଥମେ ବୁଦ୍ଧଙ୍କର ଜୀବନୀ ସମ୍ପର୍କରେ କିଛି ଜାଣିବା ଉଚିତ । ବୁଦ୍ଧଦେବ ଆଜିକୁ ପ୍ରାୟ ଅଢେଇ ହଜାର ବର୍ଷ ତଳେ ଖ୍ରୀଷ୍ଟ ପୂର୍ବ ୫୬୪ରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ଶୁଦ୍ଧୋଦନ ଶାକ୍ୟ ବଂଶର ଜଣେ ପ୍ରସିଦ୍ଧ ରାଜା ଥିଲେ । ରାମଚନ୍ଦ୍ରଙ୍କ ଭଳି ସେ ଥିଲେ ସୂର୍ଯ୍ୟ ବଂଶୀୟ, ପୌରାଣିକ ମତରେ ଯାହାର ଅର୍ଥ ହେଉଛି ସୂର୍ଯ୍ୟଙ୍କଠାରୁ ଜନ୍ମ ।

ବୈଶାଖ ପୂର୍ଣ୍ଣିମା ଦିନ ବୁଦ୍ଧଙ୍କର ମାଆ ରାଣୀ ମହାମାୟା ରାଜଧାନୀ

କପିଳବାସ୍ତୁରୁ ତାଙ୍କ ବାପଘର ଦେବଦାହାକୁ ଯାଉଥିଲେ । ଯିବା ବାଟରେ ସେ ଲୁମ୍ବିନୀଠାରେ ଦୁଇଟି ଶାଳ ଗଛର ଛାଇ ତଳେ କିଛି ସମୟ ଲାଗି ବିଶ୍ରାମ ନେଉଥିବା ବେଳେ ଶ୍ରୀ ବୁଦ୍ଧଦେବ ଜନ୍ମ ହେଲେ । କପିଳବାସ୍ତୁକୁ ଫେରିବା ପରେ ଅସୀତ୍ ନାମରେ ଜଣେ ବୃଦ୍ଧ ସନ୍ନ୍ୟାସୀ ଉଆସରେ ଆସି ପହଞ୍ଚିଲେ । ସେ ଥିଲେ ରାଜ ଜ୍ୟୋତିଷୀ ଏବଂ ସେ ଗଣନା କରି କହିଲେ ଯେ, ସେହି ଶିଶୁଟି ବଡ ହେଲେ ଜଗତକୁ ଉଦ୍ଧାର କରିବ ।

ଶିଶୁଟିର ନାଁ ଦିଆଗଲା 'ସିଦ୍ଧାର୍ଥ'; କିନ୍ତୁ ଗୌତମ ଥିଲା ତାଙ୍କ ବଂଶଗତ ନାଆଁ । ସେଇ ନାଆଁରେ ସେ ଜଣାଶୁଣା ହେଲେ ଏବଂ ପରେ 'ଗୌତମ ବୁଦ୍ଧ' ବା 'ଜ୍ଞାନୀ ଗୌତମ' ନାମରେ ଖ୍ୟାତି ଅର୍ଜନ କଲେ । ଜନ୍ମ ହେବାର ମାତ୍ର ଗୋଟିଏ ସପ୍ତାହ ପରେ ରାଣୀ ମହାମାୟାଙ୍କର ପରଲୋକ ଘଟିବାରୁ ରାଜକୁମାରଙ୍କର ଜନ୍ମ ଉତ୍ସବର ଆଡ଼ମ୍ବରକୁ ହଠାତ୍ କମାଇ ଦିଆଗଲା । ଗୌତମ ଏଣିକି ତାଙ୍କ ସାବତ ମାଆ, ଯେ କି ଥିଲେ ତାଙ୍କ ମାଆଙ୍କର ଭଉଣୀ ତାଙ୍କରି ଦ୍ୱାରା ଲାଳିତ ପାଳିତ ହେଲେ ।

ଗୌତମ ବାଲ୍ୟ କାଳରୁ ଖୁବ୍ ଚିନ୍ତାଶୀଳ ଥିଲେ । ସେ ଅନ୍ୟ ପିଲାଙ୍କ ସହିତ ଖେଳକୁଦ ନ କରି ଏକୁଟିଆ ବସି ରହୁଥିଲେ ଏବଂ ନିଜ ଚିନ୍ତାରେ ନିଜେ ହଜି ଯାଉଥିଲେ । ତାଙ୍କ ବାପା, ପୁଅର ମନକୁ ଭିନ୍ନ ଦିଗରେ ଭୁଲାଇବା ପାଇଁ ଯେତେ ଚେଷ୍ଟା କଲେ ସବୁ ବିଫଳ ହେଲା । ଗୌତମଙ୍କର ବୟସ ହୋଇ ଯିବାରୁ ରାଜା ଶୁଦ୍ଧୋଦନ ଯଶୋଧାରା ନାମରେ ଗୋଟିଏ ସୁନ୍ଦରୀ ଝିଅ ସହିତ ତାଙ୍କୁ ବିବାହ କରାଇ ଦେଲେ ଏବଂ ରାଜପୁତ୍ରଙ୍କର ମନ ଯେପରି ସଂସାରର ଭୋଗ ବିଳାସରେ ଲାଗି ରହେ, ସେଥିପ୍ରତି ଧ୍ୟାନ ରଖିଲେ । କିନ୍ତୁ ସତ୍ୟର ସନ୍ଧାନ ପଥରୁ ଗୌତମଙ୍କର ମନକୁ ଏ ସବୁ କିଛି ଆଦୌ ଭଲ ଲାଗୁ ନ ଥିଲା ।

ରାଜକୁମାର ଗୌତମ ଥିଲେ କ୍ଷତ୍ରିୟ । ତେଣୁ ସମସ୍ତେ ଆଶା କରୁଥିଲେ, ଅନ୍ୟାନ୍ୟ କ୍ଷତ୍ରିୟ ବାଳକଙ୍କ ଭଳି ସେ ମଧ୍ୟ ପଶୁପକ୍ଷୀ ଶିକାର କରିବେ । ଗୌତମ କିନ୍ତୁ ଅନ୍ୟମାନଙ୍କଠାରୁ ଥିଲେ ଅଲଗା । ସେ ପଶୁପକ୍ଷୀଙ୍କୁ ହତ୍ୟା କରିବା ପରିବର୍ତ୍ତେ ସେମାନଙ୍କୁ ପାଳିବାକୁ ଭଲ ପାଉଥିଲେ । ଥରେ ତାଙ୍କର ଜଣେ ସମ୍ପର୍କୀୟ ଭାଇ ଦେବଦତ୍ତ ଗୋଟିଏ ଉଡିଯାଉଥିବା ହଂସକୁ ତୀର ବିନ୍ଧିବାରୁ ସେଇଟି ଗୌତମଙ୍କ ପାଖରେ ଆସି ଖସି ପଡିଲା । ଗୌତମ ପକ୍ଷୀଟିକୁ ତଳୁ ଉଠାଇ ନେଲେ, ତା' ଦେହରୁ ତୀର ବାହାର କରି ଦେଇ କ୍ଷତ ସ୍ଥାନରେ ପଟି ବାନ୍ଧି ଦେଲେ । କିଛି ସମୟ ପରେ ଦେବଦତ୍ତ ସେଠାରେ ଆସି ପହଞ୍ଚିଲେ । ସେ ତୀର ମାରିଥିବା ପକ୍ଷୀଟିକୁ ନେବା ପାଇଁ ଦାବି

କଲେ । ରାଜକୁମାର ଗୌତମ କହିଲେ, 'ପକ୍ଷୀଟି ଉପରେ ଭକ୍ଷକ ଅପେକ୍ଷା ରକ୍ଷକର ଦାବି ଅଧିକ '

ଏଇ ବିବାଦଟି ରାଜା ଶୁଦ୍ଧୋଦନଙ୍କ ପାଖରେ ଯାଇ ପହଞ୍ଚିଲା । ରାଜା ସେଇ ହଂସଟିକୁ ଅଣାଇ ଦରବାର ମଝିରେ ଗୋଟିଏ ଖଟୁଲି ଉପରେ ରଖିଲେ । ତା' ପରେ ଦୁଇ ରାଜକୁମାରଙ୍କୁ କହିଲେ—'ତୁମ ଦୁଇଜଣଙ୍କ ମଧ୍ୟରୁ ହଂସଟି ଯାହା ଡାକରେ ଜବାବ ଦେବ, ତାକୁ ହିଁ ସେଇଟି ଦିଆଯିବ ।' ପ୍ରଥମେ ଦେବଦତ୍ତ ଡାକିଲେ । ଡାକ ଶୁଣି ହଂସଟି ଭୟରେ ଥରିବାକୁ ଲାଗିଲା । ତା'ପରେ ଗୌତମ ଡାକିଲେ । ଏଥର ପକ୍ଷୀଟି ଦୋହଲି ଦୋହଲି ଯାଇ ରାଜକୁମାରଙ୍କ କୋଳରେ ବସି ପଡିଲା । ରାଜା ଶୁଦ୍ଧୋଦନ କହିଲେ—'ହଂସଟି ତା'ର ରକ୍ଷାକାରୀକୁ ବାଛି ନେଇଛି । ତେଣୁ ସେଇଟି ହେଉଛି ତାହାରି ।'

ସଂସାରର ଏହି ଭଳି ଆହୁରି ଅନେକ ଘଟଣା ଗୌତମଙ୍କୁ ବ୍ୟସ୍ତ କରିବାକୁ ଲାଗିଲା । ଦିନେ ସେ ଗୋଟିଏ ରାସ୍ତାରେ ଯାଉଥିବା ବେଳେ ଜଣେ ବୃଦ୍ଧ ଲୋକଙ୍କୁ ଦେଖିଲେ । ସେ ଏତେ ବୁଢା ହୋଇ ଯାଇଥିଲେ ଯେ, ସହଜରେ ଚାଲି ପାରୁ ନ ଥିଲେ । ଆଉ ଦିନେ ଜଣେ ରୋଗୀ ଲୋକ ଅଚେତ ହୋଇ ତଳେ ପଡିଥିବାର ଦେଖିଲେ । ତା'ପରେ ଦିନେ ସେ ଗୋଟିଏ ଶବ ମଶାଣିକୁ ନିଆଯାଉ ଥିବାର ଦେଖିଲେ । ଏ ସବୁ ଦେଖି, ଗୌତମ ନିଜକୁ ନିଜେ ପଚାରିଲେ—'ଦୁଃଖ କଅଣ ? ସଂସାରରେ ଏତେ ଦୁଃଖ କଷ୍ଟ ଅଛି କାହିଁକି ? ସେଗୁଡିକ ଦୂର କରିବାର କଅଣ କିଛି ଉପାୟ ନାହିଁ ?' ତା'ପରେ ଦିନେ ଗୌତମ ଜଣେ ସନ୍ନ୍ୟାସୀଙ୍କୁ ଦେଖିଲେ । ସନ୍ନ୍ୟାସୀ ଜଣକ ଏତେ ଧୀରସ୍ଥିର ଜଣା ପଡୁଥିଲେ ଯେ, ମନେ ହେଉଥିଲା ସେ ମନୁଷ୍ୟର ଜରା, ରୋଗ ଓ ମୃତ୍ୟୁ ସମ୍ପର୍କୀୟ ସମସ୍ୟାଗୁଡିକର ସମାଧାନ କରିପାରିଛନ୍ତି । ଗୌତମ ସ୍ଥିର କଲେ, ସେ ଘର ସଂସାର ଛାଡି, ସନ୍ନ୍ୟାସୀ ହୋଇଯିବେ ।

ଗୌତମଙ୍କର ସେତେବେଳକୁ ଗୋଟିଏ ପୁଅ ହୋଇ ସାରିଥିଲା । କିନ୍ତୁ ନିଜର ପୁତ୍ର ରାହୁଲ ପ୍ରତି ସ୍ନେହ ବା ସ୍ତ୍ରୀ ଯଶୋଧାରାଙ୍କ ପ୍ରତି ମମତା କିଛି ହେଲେ ତାଙ୍କୁ ତାଙ୍କ ଉଦ୍ଦେଶ୍ୟ ପଥରୁ ହଟାଇ ପାରିଲା ନାହିଁ । ଥରେ ରାତିରେ, ତାଙ୍କ ସ୍ତ୍ରୀ ପୁତ୍ର ଗାଢ ନିଦରେ ଶୋଇଥିବା ବେଳେ ସେ ଘରୁ ଲୁଚିକରି ବାହାରିଗଲେ । ସେ ତାଙ୍କ ରାଜପୋଷାକ ଓହ୍ଲାଇ ପକାଇଲେ, ଲମ୍ବ କେଶଗୁଡିକ କାଟି ପକାଇଲେ ଏବଂ ଜ୍ଞାନାଲୋକର ସନ୍ଧାନ କରିବା ନିମନ୍ତେ ଅନ୍ଧକାର ମଧ୍ୟରେ କେଉଁଆଡେ ହଜିଗଲେ ।





ଗୌତମ ଅନେକ ତୀର୍ଥସ୍ଥାନ ବୁଲିଲେ । ଆଶ୍ରମର ଅଧିବାସୀମାନଙ୍କୁ ନିଜ ପ୍ରଶ୍ନଗୁଡିକର ଉତ୍ତର ପଚାରି ପଚାରି ଗୋଟିଏ ଆଶ୍ରମରୁ ଆଉ ଗୋଟିଏ ଆଶ୍ରମ, ଏଇଭଳି ଅନେକ ସ୍ଥାନ ବୁଲିଲେ । କିନ୍ତୁ କୌଣସି ପ୍ରଶ୍ନର ଉତ୍ତର ସେ ପାଇଲେ ନାହିଁ । ଶେଷରେ ଦିନେ ଗୟା ନିକଟସ୍ଥ ନୀରଞ୍ଜନା ନଦୀ କୂଳରେ ଥିବା ଗୋଟିଏ ଅରଣ୍ୟରେ ଯାଇ ପହଞ୍ଚିଲେ । ଗୌତମ ଏଠାରେ ଛ' ବର୍ଷ କାଳ ରହିଲେ ଏବଂ ନିଜର ଅସ୍ଥି କଙ୍କାଳ ଦେଖାଯିବା ପର୍ଯ୍ୟନ୍ତ ନ ଖାଇ ନ ପିଇ ନାନା ପ୍ରକାର ଯୋଗ ସାଧନାରେ ଲାଗିଲେ । ଶେଷରେ ସେ ଅନୁଭବ କଲେ, ଶରୀରକୁ କଷ୍ଟ ଦେଇ ଫଳ ଲାଭ କରିହୁଏ ନାହିଁ । ଠିକ୍ ସେଇଦିନ ସୁଜାତା ନାମରେ ଜଣେ ସ୍ତ୍ରୀ ଲୋକ ତାଙ୍କୁ କ'ସାଏ କ୍ଷୀର ପିଇବାକୁ ଦେଲା ଏବଂ ଜଣେ ଘାସ କଟାଳୀ ବିଛଣା କରିବା ପାଇଁ ବିଡାଏ ଘାସ ଦେଲା । ଗୌତମ ଏ ଦୁଇଟିଯାକ ଉପହାର ଗ୍ରହଣ କଲେ । କ୍ରମେ ତାଙ୍କ ସ୍ୱାସ୍ଥ୍ୟ ସେ ଫେରି ପାଇଲେ । ସେ ଗୋଟିଏ ଅଶ୍ୱତ୍ଥ ଗଛ ତଳେ ଆସନ ଗ୍ରହଣ କଲେ ଏବଂ ନିଷ୍ପତ୍ତି କଲେ ଯେ, ନିଜ ପ୍ରଶ୍ନ ଗୁଡିକର ଉତ୍ତର ନ ପାଇଲା ପର୍ଯ୍ୟନ୍ତ ସେ ସେଇଠାରେ ରହିବେ ।

ଥରେ ପାହାନ୍ତା ପ୍ରହର ବେଳକୁ, ସକାଳ ହେବାକୁ ଆଉ ପ୍ରାୟ ଘଡିଏ ସମୟ ବାକିଥାଏ, ଠିକ୍ ଏତିକିବେଳେ ତାଙ୍କର ଜ୍ଞାନ ଉଦୟ ହେଲା । ସେ ମନୁଷ୍ୟ ଜୀବନ ବିଷୟରେ ଚାରୋଟି ସତକଥା ଜାଣି ପାରିଲେ— ଜୀବନରେ ଥିବା ଦୁଃଖ କଷ୍ଟ ଏବଂ ତାର କାରଣ, ସେଗୁଡିକୁ ଅତିକ୍ରମ କରିବାର ଆବଶ୍ୟକତା ଏବଂ ତାହାର ଉପାୟ । ଏହିଭଳି ଭାବରେ ଗୌତମ ହେଲେ ଗୌତମ 'ବୁଦ୍ଧ' ବା 'ଜ୍ଞାନୀ' ଗୌତମ । ଏଇ ଘଟଣାଟି ଘଟିଲା ତାଙ୍କ ୩୫ ତମ ଜନ୍ମ ଦିବସରେ ଏବଂ ସେଦିନ ମଧ୍ୟ ଥିଲା ବୈଶାଖ ପୂର୍ଣ୍ଣିମା ।

ବୁଦ୍ଧଦେବ ଗୟାଠାରୁ ବାରଣସୀ ନିକଟବର୍ତ୍ତୀ ସାରନାଥ ଅଭିମୁଖେ ଯାତ୍ରା କଲେ । ସେଠାରେ ପାଞ୍ଚ ଜଣ ଲୋକ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ସେ ଯେଉଁ ସତ୍ୟ ଆବିଷ୍କାର କରିଥିଲେ, ସେଗୁଡିକ ତାଙ୍କୁ କହିଲେ ଏବଂ ପ୍ରଥମ 'ସଂଘ' ଗଠନ କଲେ । ତା'ପରେ ନାନା ଆଡେ ବୁଲି ବୁଲି ସତ୍ୟଗୁଡିକର ପ୍ରଚାର କଲେ । ପଣ୍ଡିତ, ସନ୍ନ୍ୟାସୀ, ରାଜା ଏବଂ ରାଜକର୍ମଚାରୀଙ୍କ ସମେତ ବହୁ ଲୋକ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ସେ ତାଙ୍କ ନିଜ ଘରକୁ ମଧ୍ୟ ଫେରିଗଲେ, କିନ୍ତୁ ଏଥର ସେ ତାଙ୍କ ପିତାଙ୍କ ରାଜ୍ୟକୁ ଜଣେ ରାଜକୁମାର ଭାବରେ ନ ଯାଇ, ଗଲେ ଜଣେ ଭିକ୍ଷୁକ ଭାବରେ । ତାଙ୍କ ପିତା, ସାବତ ମାଆ, ସ୍ତ୍ରୀ, ପୁତ୍ର ଇତ୍ୟାଦି ସମସ୍ତେ ସଂଘରେ





ଯୋଗ ଦେଲେ ।

ଅନ୍ୟାନ୍ୟ ଧର୍ମର ଲୋକମାନେ ତାଙ୍କ ଧର୍ମର ପ୍ରତିଷ୍ଠାତାଙ୍କ ଜନ୍ମ, ମୃତ୍ୟୁ ଏବଂ ଅନ୍ୟାନ୍ୟ ବିଶେଷ ଘଟଣାଗୁଡ଼ିକ ଭିନ୍ନ ଭିନ୍ନ ଦିବସରେ ପାଳନ କରୁଥିବାବେଳେ, ବୌଦ୍ଧମାନଙ୍କ ପାଇଁ ଏଗୁଡ଼ିକ କେବଳ ଗୋଟିଏ ଦିନରେ ହିଁ ମେଳ ହୋଇଛି, ତାହା ହେଉଛି ବୈଶାଖ ପୂର୍ଣ୍ଣିମା । ଏହିଦିନ ସେମାନେ ଗାଧୁଆ ପାଧୁଆ ସାରି କେବଳ ଧଳାଲୁଗା ପିନ୍ଧନ୍ତି । ସେମାନେ ତାଙ୍କ 'ବିହାର' ବା ମଠମାନଙ୍କରେ ଯାଇ ଏକାଠି ହୁଅନ୍ତି ଏବଂ ଭିକ୍ଷୁକମାନଙ୍କୁ ଭିକ୍ଷା ଦିଅନ୍ତି ଅନେକ ଲୋକ ସାରା ଦିନଟିକୁ ମଠରେ କଟାଇ ସେଠାରେ ବୁଦ୍ଧଙ୍କର ଜୀବନୀ ଏବଂ ଧର୍ମ ଶିକ୍ଷା ବିଷୟରେ ହେଉଥିବା ଆଲୋଚନା ଶୁଣନ୍ତି । ଆଉ କେହି କେହି ବୌଦ୍ଧ ସନ୍ନ୍ୟାସୀମାନଙ୍କୁ ନିଜ ଘରକୁ ଡାକି ସେମାନଙ୍କଠାରୁ ଧର୍ମ ଉପଦେଶ ଶୁଣନ୍ତି । ସେମାନେ 'ପଞ୍ଚଶୀଳ' ବା ପାଞ୍ଚୋଟି ଭଲ ଆଚରଣକୁ ବିଶ୍ୱାସ କରନ୍ତି । ସେଗୁଡ଼ିକ ହେଲା, ଜୀବହତ୍ୟା କରିବ ନାହିଁ, ଚୋରି କରିବ ନାହିଁ, ମିଛ କହିବ ନାହିଁ, ମଦ୍ୟପାନ ବା ନିଶାଦ୍ରବ୍ୟ ସେବନ କରିବ ନାହିଁ, ପର ସ୍ତ୍ରୀକୁ ଖରାପ ଆଖିରେ ଚାହିଁବ ନାହିଁ ।

ବୁଦ୍ଧ ପୂର୍ଣ୍ଣିମା ଦିନ ବୌଦ୍ଧମାନେ ଆମିଷ ଖାଆନ୍ତି ନାହିଁ । ସେମାନେ ସେଦିନ 'କ୍ଷୀରି' ଖାଆନ୍ତି ଏବଂ ଗରିବ ଲୋକମାନଙ୍କୁ ବାଣ୍ଟନ୍ତି । ସେମାନେ ସର୍ବସାଧାରଣ ସ୍ଥାନମାନଙ୍କରେ ଜଳଛତ୍ର ଖୋଲି ବିଶୁଦ୍ଧ ପାନୀୟ ଜଳ ବାଣ୍ଟନ୍ତି । ଜୀବମାନଙ୍କୁ ଦୟା କରିବା ହେଉଛି ସେମାନଙ୍କର ଦୟାଶୀଳତାର ଗୋଟିଏ ପ୍ରଧାନ ଦିଗ । ସେମାନେ ପଞ୍ଜୁରିରେ ଆବଦ୍ଧଥିବା ପକ୍ଷୀମାନଙ୍କୁ କିଣି ନେଇ ଉଡ଼ାଇ ଦିଅନ୍ତି ଏବଂ ହଣା ହେବାକୁ ଯାଉଥିବା ପଶୁମାନଙ୍କୁ ପଇସା ଦେଇ କଂସେଇ ହାତରୁ ଖଲାସ କରି ଦିଅନ୍ତି ।

ଦୀପାବଳୀରେ ଯେମିତି କେତେକ ଘରେ କାଗଜ ଲଣ୍ଠନ ଝୁଲୁଯାଏ, ବୁଦ୍ଧ ପୂର୍ଣ୍ଣିମାରେ ମଧ୍ୟ ବୌଦ୍ଧମାନେ ଠିକ୍ ସେମିତି ବାଉଁଶରେ 'ବୈଶାଖ ଭକତ' ତିଆରି କରି ସେଥିରେ ପତ୍ର ଫୁଲ ଟାଙ୍ଗି ତାକୁ ନେଇ ଘର ସଜାନ୍ତି । କେତେକ ଲୋକ, ବୁଦ୍ଧଦେବ ଗୌତମ ରୂପରେ ଜନ୍ମ ହେବା ପୂର୍ବ ଅବତାର ସମ୍ପର୍କରେ ଜାତକ ଗପରେ ବର୍ଣ୍ଣନା କରାଯାଇଥିବା କାହାଣୀଗୁଡ଼ିକୁ କନା ବା କାଗଜରେ ଚିତ୍ର କରି ଘର କାନ୍ଥରେ ଲଗାନ୍ତି ।

ଭିନ୍ନ ଭିନ୍ନ ବୌଦ୍ଧ ଦେଶମାନଙ୍କରେ ଭିନ୍ନ ଭିନ୍ନ ରୂପରେ ଏଇ ମହାନ ଦିବସଟିକୁ ପାଳନ କରାଯାଏ । ଶ୍ରୀଲଙ୍କାରେ ଏହାକୁ ପ୍ରାୟ ଦୀପାବଳୀ ଭଳି ପାଳନ କରାଯାଏ । ସେଦିନ ସମସ୍ତଙ୍କ ଘର ଉଜ୍ଜ୍ୱଳ ଆଲୋକରେ ସଜା-

ଯାଏ, ଏପରିକି ସବୁଠାରୁ ଗରିବ ଲୋକଟି ମଧ୍ୟ ଅତି କମ୍‌ରେ ମାଟି ଦୀପଟିଏ ଜାଳିବାକୁ ଛାଡେ ନାହିଁ ।

ଜାପାନରେ ବୌଦ୍ଧମାନେ ଅପ୍ରେଲ ଆଠ ତାରିଖଟିକୁ ବୁଦ୍ଧଙ୍କର ଜନ୍ମ ଦିବସ ରୂପେ ସ୍ଥିର କରିଛନ୍ତି । ଏହି ଦିନ ସେମାନେ ଫୁଲରେ ଛୋଟ ଛୋଟ ମନ୍ଦିର ତିଆରି କରି ସେଥିରେ ବୁଦ୍ଧଙ୍କର ଛୋଟ ମୂର୍ତ୍ତିଟିଏ ଲେଖାଁ ସ୍ଥାପନ କରନ୍ତି । ଖୁବ୍ ଭକ୍ତିର ସହିତ ସେମାନେ ଏହି ମୂର୍ତ୍ତି ଗୁଡିକୁ ଗାଧୋଇ ଦେଇ ପବିତ୍ର କରନ୍ତି ।

ବର୍ମାରେ ବୌଦ୍ଧମାନେ ବୁଦ୍ଧଙ୍କ ସମ୍ମାନାର୍ଥେ ପ୍ରତ୍ୟେକ ମାସରେ ଅଲଗା କରି ଗୋଟିଏ ଲେଖାଁ ଦିନ ରଖିଥାଆନ୍ତି । ବୁଦ୍ଧଦେବ ବୋଧି ଦ୍ରୁମ ତଳେ ବସି ଜ୍ଞାନଲାଭ କରିଥିବାରୁ ଏହି ଗଛଟିକୁ ପାଣି ଦେଇ ବଢାଇବାରେ ଯତ୍ନ ନିଆଯାଏ ।

ବୁଦ୍ଧ ପୂର୍ଣ୍ଣିମା ପାଳନ ସମ୍ପର୍କରେ କବିତା ଏବଂ ଉପନ୍ୟାସ ମାନଙ୍କରେ ବିଶଦ ଭାବେ ବର୍ଣ୍ଣନା କରାଯାଇଛି ଏବଂ ଚିତ୍ରମାନଙ୍କରେ ଅଙ୍କିତ ହୋଇଛି । କାରଣ ବୁଦ୍ଧ ପୂର୍ଣ୍ଣିମା ଖାଲି ମଉଜ ମଜ୍‌ଲିସର ଦିନ ନୁହେଁ ବରଂ ଏହା ହେଉଛି ପୃଥିବୀର ଜଣେ ମହାନ ଧର୍ମଗୁରୁଙ୍କର ଜୀବନୀ ଓ ଶିକ୍ଷା ସମ୍ପର୍କରେ ଏକ ଝଲକ ।

ମୂଳ ହିନ୍ଦୀ ଲେଖା—ବିଷ୍ଣୁ ପ୍ରଭାକର



# ବିହୁ

ବିହୁ ହେଉଛି ଆସାମର ସବୁଠାରୁ ଗୋଟିଏ ବଡ ପର୍ବ । ଅନ୍ୟ କୌଣସି ପର୍ବ ଏହା ଭଳି ସବୁ ବୟସର ଲୋକମାନଙ୍କ ମଧ୍ୟରେ ଏତେ ଆନନ୍ଦ ଉତ୍ସାହ ସୃଷ୍ଟି କରେ ନାହିଁ । ଆଉ ମଧ୍ୟ ଏହା ସବୁ ପ୍ରକାର ଧର୍ମଗତ ଓ ଜାତିଗତ ଭେଦଭାବକୁ ଏଡ଼ାଇ ଲୋକମାନଙ୍କୁ ଅବାଧ ମିଳାମିଶାର ସୁଯୋଗ ଦିଏ ।

ସାଧାରଣତଃ 'ବିହୁ' କହିଲେ ବସନ୍ତ ଋତୁର 'ବୋହାଗ ବିହୁ'କୁ ବୁଝାଏ, ମାତ୍ର ଆସାମର ଲୋକମାନେ ଗୋଟିଏ ନୁହେଁ, ତିନୋଟି ବିହୁ ପାଳନ କରନ୍ତି । ପ୍ରକୃତ ପକ୍ଷେ ଏ ତିନୋଟି ଯାକ ପର୍ବ ମିଶି ଗୋଟିଏ ବୋଲି କହିଲେ ଚଳେ । ଅପ୍ରେଲ ମାସର ମଝାମଝି ସମୟରେ ପାଳନ କରାଯାଉଥିବା 'ବୋହାଗ ବିହୁ' ବ୍ୟତୀତ ଜାନୁଆରୀ ମାସ ମଝିରେ 'ମାଘ ବିହୁ', ଅକ୍‌ଟୋବର ମାସ ମଝିରେ 'କାତି ବିହୁ' ପାଳନ କରାଯାଏ । ଏଇ ତିନୋଟି ଯାକ ବିହୁ ଯଥାକ୍ରମେ ବସନ୍ତ, ଶୀତ ଏବଂ ଶରତ ଋତୁ ସହିତ ସଂପୃକ୍ତ । ଏଗୁଡ଼ିକ ମଧ୍ୟରେ ବୋହାଗ ବିହୁର ସ୍ଥାନ ସମସ୍ତଙ୍କ ଉପରେ ଏବଂ ଆଜିକାଲି ଏହା ସବୁଠାରୁ ବଡ ପର୍ବ ରୂପେ ବିବେଚିତ । ଏହା ତଳକୁ ମାଘ ବିହୁର ସ୍ଥାନ ଏବଂ ସମସ୍ତଙ୍କ ଶେଷରେ ହେଉଛି କାତି ବିହୁ ।

ବସନ୍ତ ଉତ୍ସବ, ନୂଆ ବର୍ଷ ଏବଂ କୃଷି ପର୍ବ—ଏ ତିନୋଟି ଯାକ ଏକାଠି ମିଶି ବୋହାଗ ବିହୁ ହୋଇଛି । ଆସାମରେ ବସନ୍ତ ଋତୁଟି ଅତ୍ୟନ୍ତ ରମଣୀୟ । ଏଇ ସମୟରେ ଗଛ ଲତାରେ ନୂତନ ପତ୍ର କଅଁଳେ, ନାନା ଜାତି ଫୁଲର ସୁଗନ୍ଧରେ ପବନ ସୁରଭିତ ହୁଏ, ପକ୍ଷୀମାନଙ୍କର ସଙ୍ଗୀତରେ ପାହାଡ ଓ ସମତଳ ଭୂମି ପ୍ରତିଧ୍ୱନିତ ହୋଇ ଉଠେ । ହସଖୁସିରେ ଲୋକମାନଙ୍କର ମନ ଉଛୁଳି ଉଠେ ଏବଂ ସେମାନେ ଆନନ୍ଦର ସହିତ ବୋହାଗ ବିହୁ ପାଳନ କରନ୍ତି । ଲୋକମାନେ ହସି, ଖେଳି, ନାଚି, ଗାଇ ବେଶ୍ ମଉଜ କରନ୍ତି । ଏଇଥି ପାଇଁ ବୋହାଗ ବିହୁକୁ 'ରଙ୍ଗଲି ବିହୁ' ବା 'ହସ ଖୁସିର ବିହୁ' ବୋଲି ମଧ୍ୟ କୁହାଯାଏ ।

ଅସମୀୟା ପାଞ୍ଜିରେ 'ବୋହାଗ' ହେଉଛି ବର୍ଷର ପ୍ରଥମ ମାସ ଏବଂ 'ଚ୍ଚେତ' (ଚୈତ୍ର) ହେଉଛି ଶେଷ ମାସ । ତେଣୁ ବୋହାଗ ବିହୁ ନବବର୍ଷ ଆଗମନର ସୂଚନା ଦେଇଥାଏ । ସୁତରାଂ ଲୋକମାନେ ଆଗାମୀ ବର୍ଷ ପାଇଁ ସେମାନଙ୍କର ପରିବାର ଏବଂ ସମାଜର ସୁଖ ସମୃଦ୍ଧି କାମନା କରିବା

ସ୍ୱାଭାବିକ । ଏଇ ପର୍ବରେ ପ୍ରାର୍ଥନା କରାଯାଏ ଏବଂ ବୟସ୍କ ଲୋକମାନଙ୍କୁ ପ୍ରଣାମ କରି ସେମାନଙ୍କର ଆଶୀର୍ବାଦ ଭିକ୍ଷା କରାଯାଏ ।

ସାଧାରଣତଃ ଏଇ ସମୟରେ ଆସାମରେ ଉତ୍ତର-ପଶ୍ଚିମ ମୌସୁମୀ ବାୟୁ ପ୍ରବେଶ କରି ପହିଲି ବର୍ଷା କରାଏ । ଆସାମର ଲୋକମାନଙ୍କ ମନରେ ଏକ ପୁରୁଣାକାଳିଆ ବିଶ୍ୱାସ ଯେ ଅଛି, ଏଇ ମୌସୁମୀ ବାୟୁ କୁଆଡେ ପୁରାଣ ବର୍ଣ୍ଣିତ ଗୋଟିଏ ନାରୀ 'ବରଦୋଇ ଶିଲା' ଯୋଗୁଁ ଆସେ । ବର-ଦୋଇ ଶିଲା ବିହୁ ସମୟରେ ତାର ମାଆ ପାଖକୁ ବୁଲି ଆସେ ଏବଂ କିଛି ଦିନ ରହି ପୁଣି ତାର ଶାଶୁଘରକୁ ଫେରିଯାଏ । ସାଧାରଣତଃ ପ୍ରତିବର୍ଷ ବିହୁ ସମୟରେ ଝଡ ତୋଫାନ ହୋଇଥାଏ ଏବଂ ଏଇ ଝଡ ତୋଫାନର କାରଣ ବରଦୋଇ ଶିଲା ବୋଲି ପିଲମାନେ ବିଶ୍ୱାସ କରନ୍ତି । ବର୍ଷା ଓ ତୋଫାନ ଫଳରେ ଖରାଦିନିଆ ଶୁଖିଲା ଜମି ବୁଣାବୁଣି ଓ ଧାନ ରୋପଣ ପାଇଁ ପ୍ରସ୍ତୁତ ହୋଇଯାଏ । ତେଣୁ ବୋହାଗ ବିହୁ ହେଉଛି ଋଷ ଅନୁ-କୂଳର ପ୍ରତୀକ ଏବଂ ଏଇ ପର୍ବ ସହିତ ସଂପୃକ୍ତ ଅନେକ ବିଧିବିଧାନ ଏଇ କୃଷି କର୍ମରୁ ହିଁ ଜାତ । ବୋହାଗ ବିହୁ ଆସାମରେ କେତେ ଲୋକପ୍ରିୟ ତାହା ଏଇ ତଳ ଗୀତ ପଦକରୁ ଜଣାଯାଏ—

ଆମର ପ୍ରିୟ ମୁଗା ନଟେଇ
ତା ଠଉଁ ପ୍ରିୟ ଲୁଣି
ତା' ଠଉଁ ପ୍ରିୟ ବୋହାଗ ବିହୁ
ନ ପାଳି ଛାଡିବା କେମିତି ?

ଯଦିଓ ବିହୁ ପର୍ବ ପାଇଁ ବହୁ ଆଗରୁ ସଜବାଜ ଆରମ୍ଭ ହୋଇଯାଏ ଏବଂ ଏହା ପ୍ରାୟ ପୂରା ମାସେ ପର୍ଯ୍ୟନ୍ତ ଋଲେ, ଏ ବିଧି ଅନୁଯାୟୀ ଏହା ଚଇତ ମାସର ଶେଷ ଦିନରୁ (ବିଷୁବ ସଂକ୍ରାନ୍ତି) ଆରମ୍ଭ ହୋଇ ବୈଶାଖ ମାସର କେତେଦିନ ପର୍ଯ୍ୟନ୍ତ ଋଲେ ।

ବିହୁ ପର୍ବର ପ୍ରଥମ ଦିନଟିକୁ 'ଗୋରୁ ବିହୁ' ବୋଲି କୁହାଯାଏ ଏବଂ ଗୋରୁ ପୂଜା ପାଇଁ ଏଇଟି ରଖାଯାଇଥାଏ । ଏଇଦିନ ଗୃହପାଳିତ ଗୋରୁ ଗାଈମାନଙ୍କର ସ୍ୱତନ୍ତ୍ର ଯତ୍ନ ନିଆଯାଏ । ସକାଳୁ ଗୁହାଳ ସଫାସୁତୁରା କରାଯାଏ, ଗାଈମାନଙ୍କର ଗୋଡ ଧୋଇ ଦିଆଯାଏ । ସେମାନଙ୍କର ଶିଙ୍ଗ ଓ ଖୁରାରେ ତେଲ ବୋଳାଯାଏ । କେହି କେହି ସେମାନଙ୍କୁ ଫୁଲ ମାଳରେ ସଜାଇ ଦିଅନ୍ତି । ତା'ପରେ ସେମାନଙ୍କୁ ନିକଟସ୍ଥ ନଦୀ ବା ପୋଖରୀକୁ ନିଆ ଯାଏ ।ବାଟରେ ଗଲାବେଳେ ତାଙ୍କର ପିଠିକୁ ଆସାମରେ ମିଳୁଥିବା 'ଦିଗା-ଲତି' ଓ 'ମାଖିଆତି' ନାମକ ଗଛର ଡାଳରେ ଧୀରେ ଧୀରେ ପିଟାଯାଏ

ଏବଂ ବାଉଁଶ କଣିରେ ବାଇଗଣ, କଟାଲାଉ ଓ ଅନ୍ୟାନ୍ୟ ପରିବା ବାନ୍ଧି ସେମାନଙ୍କ ଉପରକୁ ଫିଙ୍ଗାଯାଏ, ସେଥି ସଙ୍ଗେ ସଙ୍ଗେ ଏଇ ଗୀତଟି ବୋଲାଯାଏ—

ଦିଗାଲତିର ପତର ଲମ୍ବା
ଆମେ ଗାଈକୁ ପିଟିଲୁ ବାରମ୍ବାର
ଲାଉ ଖା, ବାଇଗଣ ଖା,
ବରଷକୁ ବରଷ ବଢୁଥା ।
ତୋ ମାଆଟି ଥିଲା ସାନ, ବାପାଟି ଥିଲା ସାନ
ତୁ ଗୋଟିଏ ବଡ ଗାଈ ହ'—

ବଡମାନଙ୍କର ଉଦାହରଣରେ ସାଧାରଣତଃ ଛୋଟ ଛୋଟ ପିଲାମାନେ ଖୁବ୍ ଆଗ୍ରହର ସହିତ ଏଇ କାମ କରନ୍ତି ।

ନଈ ବା ପୋଖରୀରେ ଗାଈମାନଙ୍କୁ ନେଇ ଗାଧୋଇ ଦିଆଯାଏ । ତାଙ୍କ ସାଙ୍ଗରେ ଯେଉଁମାନେ ଯାଇଥାଆନ୍ତି, ସେମାନେ ମଧ୍ୟ ଗାଧୁଅନ୍ତି । ତା' ପରେ ଗାଈମାନଙ୍କ ବେକରୁ ପୁରୁଣା ପଘା ଖୋଲି ଦିଆଯାଏ ଏବଂ ଗାଈ-ମାନେ ସେ ଦିନଟି ସାରା ଯେମିତି ଖୋଲା ବୁଲନ୍ତି ।

ପିଲାମାନେ ଘରକୁ ଫେରି ବଡମାନଙ୍କୁ ଭକ୍ତି ଜଣାନ୍ତି ଏବଂ ବଡ-ମାନେ ସେମାନଙ୍କୁ କଲ୍ୟାଣ କରନ୍ତି । ଗୋଟିଏ ସ୍ୱତନ୍ତ୍ର ଧରଣର ଗାଧୁଆ ପରେ ପରିବାରର ବୟସ୍କ ଲୋକମାନେ ନିଜର ଗୃହ-ପିଣ୍ଡି ପାଖରେ ବା ଗାଆଁର ସର୍ବସାଧାରଣ ପ୍ରାର୍ଥନା ଗୃହରେ ପ୍ରାର୍ଥନା କରନ୍ତି । ଏଇ ଗାଧୁଆକୁ ସ୍ୱତନ୍ତ୍ର ଧରଣର ବୋଲି କୁହାଯିବାର କାରଣ ହେଉଛି, ଗାଧୋଇବା ପୂର୍ବରୁ ଲୋକମାନେ ହରଡ ଡାଲି, ହଳଦୀ, ନିମପତ୍ର ଇତ୍ୟାଦିକୁ ଏକାଠି ବାଟି ଦେହରେ ଭଲକରି ଘଷନ୍ତି ।

ସଞ୍ଜବେଳେ ଗାଈମାନେ ଫେରିବା ପରେ ଗୁହାଳେ ଗୋଟିଏ ମାଟି ଦୀପ ଜଳାଇ ଦିଆଯାଏ । ଗାଈମାନଙ୍କୁ ନୂଆ ପଘାରେ ବନ୍ଧାଯାଏ । ସେମା-ନଙ୍କୁ ପୂଜା କରାଯାଏ ଏବଂ ପିଠାପଣା ଖାଇବାକୁ ଦିଆଯାଏ ।

ତା' ପର ଦିନଟି ହେଉଛି 'ମଣିଷ ବିହୁ' । ଦିନ ମଧ୍ୟ ବଡମାନଙ୍କୁ ସାନମାନେ ଭକ୍ତି ଜଣାନ୍ତି ଏବଂ ବନ୍ଧୁବାନ୍ଧବଙ୍କ ଘରକୁ ବୁଲିଯାଆନ୍ତି । ସେ ଦିନର ଖାଦ୍ୟ ହେଉଛି ଚୂଡା, ଦହି ଏବଂ ମିଠା ।

ବିହୁ ପର୍ବର ଗୋଟିଏ ଆକର୍ଷଣୀୟ ଦିଗ ହେଉଛି ଉପହାର ବଣ୍ଟନ । ଅସମୀୟା ଭାଷାରେ ଏହାକୁ 'ବିହୁୱାନ' ବୋଲି କହନ୍ତି । ଉପହାର ମଧ୍ୟରେ ପ୍ରଧାନତଃ ଲୁଗାପଟା ଥାଏ । ଅଧିକାଂଶ କ୍ଷେତ୍ରରେ ସ୍ତ୍ରୀ ଲୋକ-

ମାନଙ୍କ ଦ୍ୱାରା ଘର ତନ୍ତରେ ବୁଣା ଯାଇଥିବା ଗାମୁଛା ହେଉଛି ଉପହାରର ପ୍ରଧାନ ସାମଗ୍ରୀ। ପୋଷାକପତ୍ର ଏବଂ ଅନ୍ୟାନ୍ୟ ଜିନିଷ ମଧ୍ୟ ଉପହାର ସ୍ୱରୂପ ଦିଆଯାଏ। ଏଗୁଡିକ ହେଉଛି ସ୍ଥାନ ବିଶେଷରେ ଭକ୍ତି ବା ଶ୍ରଦ୍ଧାର ନିଦର୍ଶନ। ପିଲାମାନେ ଖୁବ୍ ଆଗ୍ରହର ସହିତ ସେମାନଙ୍କର ମାଆ, ବଡ ଭଉଣୀ ମାଉସୀ, ପିଉସୀ, ଖୁଡି ଇତ୍ୟାଦି ଶୁଭକାମୀ ସଂପର୍କୀୟମାନଙ୍କଠାରୁ ଉପହାର ପାଇବା ଆଶାରେ ଅପେକ୍ଷା କରି ରହିଥାଆନ୍ତି।

ବିହୁ ପର୍ବର ତୃତୀୟ ଦିବସକୁ ବେଳେବେଳେ 'ଗୋସେଇଁ ବିହୁ' ବା 'ଦିଅଁ ବିହୁ' ବୋଲି କୁହାଯାଏ। ଏଇଟି ପୃଥକ ଭାବେ ଧର୍ମ କାମ ପାଇଁ ରଖାଯାଇଥାଏ। ତା' ପରଦିନଗୁଡିକରେ ସେମିତି କିଛି ବିଧି-ବିଧାନ ନ ଥାଏ। ମାତ୍ର ସପ୍ତମ ଦିନଟିକୁ 'ସାତ ବିହୁ' ନାମରେ ପାଳନ କରଯାଏ। ଏହାର ଗୋଟିଏ ବିଶେଷତ୍ୱ ଅଛି। ଏଇ ଦିନ ସାତ ପ୍ରକାର ଶାଗ ଖାଇବା ହେଉଛି ବିଧି। ଆସାମର ତଳ ଅଞ୍ଚଳରେ 'ସାତ ଶାକୀ' ହେଉଛି ଗୋଟିଏ ଛୋଟିଆ ପର୍ବ। ଏଥିରେ ବୟସ୍କା ସ୍ତ୍ରୀ ଲୋକମାନେ ଗାଆଁ ପାଖ ପଡିଆକୁ ଯାଇ ଶାଗ ତୋଳନ୍ତି ଏବଂ ସେଠାରେ ଗୀତ ଗାଇ ବେଳେବେଳେ ନାଚନ୍ତି।

ଖେଳ କସରତ ହେଉଛି ବିହୁ ପର୍ବର ଗୋଟିଏ ଅଙ୍ଗ। ଏହି ଉତ୍ସବର ଗୋଟିଏ ପ୍ରଧାନ ଖେଳ ହେଉଛି 'କାନି-ଯୁଝ' ବା ଅଣ୍ଡା ଲଢେଇ। ଏଥିରେ ଦୁଇଜଣ ଲୋକ ଦୁଇଟି ଅଣ୍ଡା ଧରି ପରସ୍ପର ଅଣ୍ଡାକୁ ଆଘାତ କରନ୍ତି। କଉଡି ଖେଳ ଓ ପାଲିଖେଳ (ଚେସ୍) ସ୍ତ୍ରୀ ଲୋକମାନଙ୍କର ପ୍ରିୟ। 'ଧୋପ' ନାମକ ଏକ ପ୍ରକାର ବଲ୍ ଖେଳ ଏବଂ 'ହାଉ' ବା କବାଡି ଖେଳ ମଧ୍ୟ ବେଶ ଲୋକପ୍ରିୟ। ପିଲାମାନେ ଏଇ ସବୁ ଖେଳ ଦେଖିବା ସଙ୍ଗେ ସଙ୍ଗେ ଖୁବ୍ ଆଗ୍ରହର ସହିତ ଏଥିରେ ଭାଗ ନିଅନ୍ତି।

ଆସାମର ଅନ୍ୟାନ୍ୟ ପର୍ବପର୍ବାଣି ସହିତ ବୋହାଗ ବିହୁର ପାର୍ଥକ୍ୟ ହେଉଛି ଏହାର ସ୍ୱତନ୍ତ୍ର ବିହୁ-ଗୀତ ଏବଂ ନାଚ। ମୁଖ୍ୟତଃ ପ୍ରେମଭାବକୁ ନେଇ ରଚିତ ବିହୁ ଗୀତଗୁଡିକ ଅସମୀୟା ଲୋକଗୀତର ସୁନ୍ଦର ନମୁନା ଏବଂ ଏଗୁଡିକର ସ୍ୱର ଏବଂ ଛନ୍ଦ ଅତ୍ୟନ୍ତ ମଧୁର। ଏଇ ଗୀତ ଗୁଡିକ ଢୋଲ, ଶିଙ୍ଗା, ଝାଞ୍ଜ ଇତ୍ୟାଦି ନାନା ପ୍ରକାର ବାଦ୍ୟ ଯନ୍ତ୍ର ବଜାଇ, ତାଳି ମାରି ଗାନ କରଯାଏ। ବିହୁ-ନାଚ ଗୋଟିଏ ଖୁବ୍ ଜୋରଦାର ନାଚ। ଏଥିରେ ଯୁବକ ଯୁବତୀମାନଙ୍କର ମନର ଆନନ୍ଦ ଉତ୍ସାହ ପ୍ରତିଫଳିତ ହୋଇଥାଏ। ସାଧାରଣତଃ ସହରମାନଙ୍କରେ ଯୁବକ ଯୁବତୀମାନେ ଦଳ ଦଳ ହୋଇ କେତେବେଳେ ଏକତ୍ର ଏବଂ କେତେବେଳେ ପୃଥକ

ନାଚ ଗୀତ କରନ୍ତି ।

ଅନ୍ୟ ଗୋଟିଏ ପ୍ରକାର ନାଚଗୀତ ହେଉଛି 'ହୁଚ୍ଚରି' । ବୋହାଗ ବିହୁ ସମୟରେ ଏହା ହେଉଛି ଗୋଟିଏ ସାଧାରଣ ଘଟଣା । ହୁଚ୍ଚରି ଗୀତ-ଗୁଡ଼ିକ ହେଉଛି ଧର୍ମ ଭାବନା ମୂଳକ ଓ ଏହାକୁ ଯୁବକ ଏବଂ ମଧ୍ୟ-ବୟସର ଲୋକମାନେ ଏକାଠି ହୋଇ ଗାଆଁ ଦାଣ୍ଡରେ ଗାଆନ୍ତି । ଏହାର ନାଚ ଭାରି ସାଧାସିଧା ଅଥଚ ସମ୍ମାନଜନକ । ନାଚର ଦଳପତି ମଝିରେ ଠିଆ ହୁଅନ୍ତି, ଅନ୍ୟମାନେ ତାଙ୍କ ଚାରିପଟେ ଗୋଲାକାରରେ ଘେରି ରହି ଗୀତର ତାଳ ଅନୁଯାରେ ଘୂରନ୍ତି ।

ଲୋକମାନେ ହୁଚ୍ଚରି ଦଳକୁ ଖୁବ୍ ଆଗ୍ରହର ସହ ପାଛୋଟି ନିଅନ୍ତି । ସେମାନଙ୍କଠାରୁ କଲ୍ୟାଣ ଭିକ୍ଷା କରନ୍ତି । ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ ସମ୍ମାନ ଦେଖାଇ କିଛି କିଛି ଭେଟି ଦିଅନ୍ତି ।

କେବଳ ଉପର-ଆସାମ ଏବଂ ମଧ୍ୟ-ଆସାମରେ ନାଚଗୀତ ଓ ହୁଚ୍ଚରି ଗୀତ ବିହୁ ପର୍ବର ପ୍ରଧାନ ଅଙ୍ଗ ଭାବରେ ବିବେଚିତ ହୁଏ; କିନ୍ତୁ ଆସାମର ତଳ-ଅଞ୍ଚଳରେ ଏ ସବୁ ଦେଖାଯାଏ ନାହିଁ । ଏଠାରେ କିନ୍ତୁ ବୋହାଗ ବିହୁ ସମୟରେ ଗୋଟିଏ ପ୍ରକାର ସ୍ୱତନ୍ତ୍ର ପର୍ବ ପାଳନ କରାଯାଏ, ଯାହାକି ଅନ୍ୟ କେଉଁଠାରେ ଦେଖାଯାଏ ନାହିଁ । ଏହା ଗୋଟିଏ ମେଳା ଏବଂ ବିହୁ ପର୍ବର ଠିକ ପରେ ପରେ ଅନୁଷ୍ଠିତ ହୁଏ । କାମରୂପ ଅଞ୍ଚଳରେ ଏହାକୁ 'ଭଥେଲି' ବା 'ସୁଓାରି' ଏବଂ ମଙ୍ଗଳଦାଇ ଅଞ୍ଚଳରେ ଏହାକୁ 'ଦେଉଲ' ବୋଲି କହନ୍ତି । ମାତ୍ର ଗୋଆଲପଡ଼ାର କେତେକ ଅଞ୍ଚଳରେ ବିହୁର ସପ୍ତମ ଦିବସରେ 'ସାତ ବିଶୁଓାର ମେଳା' ଅନୁଷ୍ଠିତ ହୁଏ ।

ବିହୁ ପର୍ବର ଠିକ୍ ପାଖାପାଖି ସମୟରେ ଆସାମର ବିଭିନ୍ନ ଆଦି-ବାସୀ ଗୋଷ୍ଠୀର ଲୋକେ ମଧ୍ୟ ସେମାନଙ୍କର ନିଜ ନିଜର ପ୍ରଥା ଅନୁଯାୟୀ ବିହୁ ଭଳି ଆନନ୍ଦ ଉତ୍ସବ ପାଳନ କରନ୍ତି । ଏଗୁଡ଼ିକ ମଧ୍ୟରେ ବଡ଼-କାଚ୍ଚରି-ମାନଙ୍କର 'ବଇଶାଗୁ', ରାଭସମାନଙ୍କର 'ବଇଖୁ', ମିଶିଙ୍ଗମାନଙ୍କର ଆଲି-ଆଭ-ଲିଗାଙ୍ଗ ଇତ୍ୟାଦି ପ୍ରଧାନ ।

ଯଦିଓ ବିହୁ ପର୍ବଟି ହେଉଛି ଗୋଟିଏ ଗାଉଁଲି ପର୍ବ ବା କୃଷକ-ମାନଙ୍କର ପର୍ବ, ଆଜିକାଲି, ସମୟର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଏଗୁଡ଼ିକର ଢଙ୍ଗଢାଙ୍ଗରେ ଅନେକ ପରିବର୍ତ୍ତନ ଦେଖା ଦେଲାଣି । ଆଜିକାଲି ବିହୁ ପର୍ବରେ ସଭାସମିତି କରି ସେଥିରେ ନାଚଗୀତ ଓ ଖେଳ କସରତ ଇତ୍ୟାଦି କାର୍ଯ୍ୟକ୍ରମ ଯୋଡ଼ିବା ସହରମାନଙ୍କରେ ଗୋଟିଏ ଢଙ୍ଗରେ ପରିଣତ ହୋଇଛି । ବିହୁଗୀତ ଓ ନାଚ ଏଇ କାର୍ଯ୍ୟକ୍ରମର ପ୍ରଧାନ ଅଙ୍ଗ ହେଲେ ମଧ୍ୟ

ଆସାମ ଏବଂ ଆସାମ ବାହାରର ବିଭିନ୍ନ ହିନ୍ଦୁ ସଂପ୍ରଦାୟଙ୍କୁ ଏଥିରେ ମିଶା ଯାଇଛି ।

ମାଘ ବିହୁ ହେଉଛି ଅମଳ ପର୍ବ । ଶୀତ ଋତୁରେ ଯେତେବେଳେ ଫସଲକଟା ଶେଷରେ ଗ୍ରାମବାସୀମାନେ ଟିକିଏ ଫୁରୁସତ୍ ପାଇଥାଆନ୍ତି, ଠିକ୍ ସେତିକିବେଳେ ଏଇ ଉତ୍ସବଟି ପାଳନ କରାଯାଏ । ଭୋଜିଭାତ ହେଉଛି ଏଇ ପର୍ବରେ ବଡ଼କଥା । ତେଣୁ ଏହାକୁ 'ଭୋଗାଳି ବିହୁ' ବୋଲି କୁହାଯାଏ । ଅଗ୍ନି ଉତ୍ସବ ଏହି ପର୍ବର ଆଉ ଏକ ବିଶିଷ୍ଟ ଅଙ୍ଗ ହୋଇଥିବାରୁ ଅଗ୍ନି ପୂଜା ସହିତ ଏହାର ସମ୍ପର୍କ ଅଛି । ବିହୁର ପୂର୍ବଦିନ ସନ୍ଧ୍ୟାକୁ 'ଉରୁକା' ବୋଲି କୁହାଯାଏ ଏବଂ ଉରୁକାରେ ପ୍ରତ୍ୟେକ ଘରେ ନିଜ ନିଜର ଶକ୍ତି ମୁତାବକ ମାଛ, ମାଂସ ଇତ୍ୟାଦି ନାନାପ୍ରକାର ସୁଆଦିଆ ଖାଦ୍ୟଦ୍ରବ୍ୟ ତିଆରି କରାଯାଏ । ପାଖ ନଈ ବା ପୋଖରୀରୁ ସକାଳୁ ସକାଳୁ ମାଛ ଆଣି ରଖା ଯାଇଥାଏ । କେତେକ ଅଞ୍ଚଳରେ ଗ୍ରାମବାସୀମାନେ ଦଳବଦ୍ଧ ହୋଇ ମାଛ ମାରିବାକୁ ଯାଆନ୍ତି । ଏହା ହେଉଛି ହସ କୌତୁକର ଏକ ଭଲ ଅବସର । ଦଳ ଦଳ ପିଲା ଓ ଯୁବକ ଏକାଠି ହୋଇ ନଡ଼ା, ଶୁଖିଲା କଦଳୀ ପତ୍ର ଏବଂ କଞ୍ଚା ବାଉଁଶରେ 'ଭେଲାଘର' ଓ 'ମେଜିସ' ନାମକ କୁଡ଼ିଆ ତିଆରି କରି ସେଠାରେ ଭୋଜି କରନ୍ତି । ସେହି ଦଳ ସେଠାରେ ନିଆଁ ଘେରି ପାଖରେ ବସି ଖୁସିରେ ଗପସପ କରନ୍ତି ଓ ହସଗୀତରେ ରାତି କଟାଇ ଦିଅନ୍ତି । ରାତିସାରା ନିଆଁକୁ ଜଳାଇ ରଖାଯାଏ ଏବଂ ଏଥିପାଇଁ କାଠକୁଟା ଇତ୍ୟାଦି ବହୁ ଆଗରୁ କୌତୁକରେ ଚୋରିକରି ଆଣି ରଖା-ଯାଇଥାଏ । ତା' ପରଦିନ ବଡ଼ି ସକାଳୁ ସମସ୍ତେ ଗାଧୋଇ ପାଧୋଇ ଆସି ସେଇ କୁଡ଼ିଆରେ ନିଆଁ ଲଗାଇ ଦିଅନ୍ତି । ଏଥିରୁ ଖୁବ୍ ଜୋରରେ ନିଆଁ ଓ ଧୂଆଁ ବାହାରେ । କଞ୍ଚା ବାଉଁଶ ପୋଡ଼ିବା ବେଳେ ତା'ର ଗଣ୍ଠି ଫୁଟି ଯେଉଁ ଠୋ-ଠା ଶବ୍ଦ ହୁଏ, ସେଥିରେ ପ୍ରତ୍ୟେକ ଲୋକ ବିଶେଷ କରି ପିଲାମାନେ ବେଶ କୌତୁକ ଅନୁଭବ କରନ୍ତି । ପ୍ରତ୍ୟେକ ପରିବାରରେ ମଧ୍ୟ ଅଲଗା ଅଲଗା ଅଗ୍ନି ଉତ୍ସବ କରାଯାଏ । ଅଗ୍ନି ଦେବତାଙ୍କ ଉଦ୍ଦେ-ଶ୍ୟରେ ପ୍ରାର୍ଥନା କରାଯାଏ । ନିଆଁ ଭିତରକୁ ନାନାପ୍ରକାର ଭୋଗ ଜିନିଷ ପିଙ୍ଗାଯାଏ ।

ଏଇ ଅବସରରେ ଘରର ସ୍ତ୍ରୀଲୋକମାନେ ଯଥେଷ୍ଟ ପରିମାଣର ଚୂଡ଼ା, ଲଡ଼ୁ ଓ ପିଠାପଣା ଇତ୍ୟାଦି ତିଆରି କରି ରଖିଥାଆନ୍ତି । ନାନା ଜାତିର ଶସ୍ୟକୁ ଭାଜି ତାକୁ ଏକାଠି ମିଶାଇ 'କରାଇ' ନାମକ ଗୋଟିଏ ପ୍ରକାର ବାରମଜା ତିଆରି କରାଯାଏ । ମଧ୍ୟାହ୍ନ ଭୋଜନ ସମୟରେ ଦହି ଓ

ଗୁଡ଼ ସହିତ ଏଗୁଡ଼ିକ ଏକାଠି ଖିଆଯାଏ ଏବଂ ସାଙ୍ଗସାଥୀମାନଙ୍କୁ ନିମନ୍ତ୍ରଣ କରାଯାଏ । ବେଳେବେଳେ ଅନେକ ଦିନ ପର୍ଯ୍ୟନ୍ତ ଏଇ ବିଧି ଚାଲେ । ବିହୁ ପର୍ବର ଆଉ ଗୋଟିଏ ବିଧି ହେଉଛି, ସାନମାନେ ବଡ଼ମାନଙ୍କୁ ପ୍ରଣାମ କରି ସେମାନଙ୍କଠାରୁ ଆଶୀର୍ବାଦ ଲାଭ କରନ୍ତି । ବୟସ୍କମାନେ ମନ୍ଦିରରେ ଏବଂ ସର୍ବସାଧାରଣ ପ୍ରାର୍ଥନା ଗୃହରେ ଯାଇ ପ୍ରାର୍ଥନା କରନ୍ତି ।

'କାତି-ବିହୁ' ବା କାର୍ତ୍ତିକ ବିହୁ ହେଉଛି ଗୋଟିଏ ଦିନିକିଆ ପର୍ବ । ଆଶ୍ୱିନ ମାସର ଶେଷ ଦିନ, ଯେତେବେଳେ କି ପ୍ରତି ଘରର ଅମାର ଖାଲି ହୋଇ ଆସିଥାଏ ଏବଂ ଧାନ ପାଚିବାକୁ ଆହୁରି କେତେଦିନ ବାକି ଥାଏ, ଠିକ୍ ସେତିକିବେଳେ ଏହା ପାଳନ କରାଯାଏ । ତେଣୁ ଏହାକୁ 'କାଙ୍ଗାଲି ବିହୁ' ବୋଲି କୁହାଯାଏ । ଏଥିରେ ଭୋଜିଭାତ ହୁଏ ନାହିଁ ।

ଏଇ ପର୍ବର ପ୍ରଧାନ କଥା ହେଲା ଘର ଅଗଣାରେ 'ତୁଳସୀ ପୂଜା' । ଚଉରାକୁ ମାଟି ଗୋବରରେ ଲିପାପୋଛା କରି ତା' ଆଗରେ ଗୋଟିଏ ଛୋଟ କଦଳୀ ଗଛ ପୋତାଯାଏ । ସଞ୍ଜବେଳକୁ ଚଉରା ମୂଳେ ଏବଂ ପୋତା ଯାଇଥିବା କଦଳୀ ଗଛର ବାହୁଙ୍ଗା ଉପରେ ମାଟି ଦୀପ ଜଳାଯାଏ ତା' ଛଡ଼ା ଅମାର ଆଗରେ ବାଡ଼ି ପଟରେ ଏବଂ ଧାନ କିଆରିରେ ମଧ୍ୟ ଦୀପ ଦିଆଯାଏ । ଘରର ସ୍ତ୍ରୀଲୋକ ଏବଂ ପିଲାମାନେ ତୁଳସୀ ଚଉରା ଆଗରେ ଆଣ୍ଠୁ ମାଡ଼ି ବସି ଏଇ ସରଳ ଗୀତଟି ଗାଆନ୍ତି—

ତୁଳସୀ ଗଛ ମୂଳେ
ଚରୁ ଅଛି ମୃଗ,
ଏହା ଦେଖି ରାମଚନ୍ଦ୍ର
ଉଠାଇଲେ ଧନୁଶର ।

କେତେକ ଲୋକ ଭଲ ଫସଲ ଆଶାରେ ଧାନ କ୍ଷେତରେ ଯାଇ ପୂଜା ପାଠ କରନ୍ତି ଏବଂ ବେଳେବେଳେ ଏଥିପାଇଁ 'ବେଜ୍'ର ସାହାଯ୍ୟ ନିଅନ୍ତି ।

ବୀରେନ୍ଦ୍ର ନାଥ ଦତ୍ତ

# ରକ୍ଷା ବନ୍ଧନ

ଶ୍ରାବଣ ପୂର୍ଣ୍ଣମୀ ଦିନ ପଇତା ବଦଳା ଉତ୍ସବ 'ଶ୍ରାବଣୀ' ଏବଂ 'ରକ୍ଷା-ବନ୍ଧନ' ନାମରେ ଯେଉଁ ଦୁଇଟି ପର୍ବ ପାଳନ କରାଯାଏ, ତାକୁ କେହି କେହି ଗୋଟିଏ ବୋଲି କହନ୍ତି; କିନ୍ତୁ ପ୍ରକୃତରେ ତାହା ନୁହେଁ   କାରଣ, ପ୍ରାଚୀନ ସଂସ୍କୃତ ଗ୍ରନ୍ଥ 'ଋଷି ତର୍ପଣ' ଏବଂ 'ଉପକର୍ମ'ରେ ଯାହା ଲେଖାଯାଇଛି, ସେଥିରୁ ଜଣାଯାଏ ଯେ, 'ଶ୍ରାବଣୀ' ହେଉଛି ବିଶେଷତଃ ବ୍ରାହ୍ମଣମାନଙ୍କର ଏକ ପର୍ବ । ଏଇଟି ହେଉଛି ଗୋଟିଏ ପ୍ରାଚୀନ ବୈଦିକ ପର୍ବ ଏବଂ ବଙ୍ଗଳା, ଓଡ଼ିଶା, ଦକ୍ଷିଣ ଭାରତ, ଗୁଜରାତ ତଥା ଆଉ କେତେକ ରାଜ୍ୟରେ ଏହାକୁ ଏକ ପ୍ରଧାନ ପର୍ବ ଭାବରେ ଗଣାଯାଏ । ଏ ଦୁଇଟିଯାକ ମଧ୍ୟରୁ 'ରକ୍ଷା ବନ୍ଧନ' ହେଉଛି ଅଧିକ ଲୋକପ୍ରିୟ ।

'ରକ୍ଷା ବନ୍ଧନ' ବା 'ରାକ୍ଷୀ' କେବେ କେଉଁଠି ଓ କାହିଁକି ପ୍ରଥମେ ଆରମ୍ଭ ହୋଇଥିଲା, ସେ ବିଷୟରେ କୌଣସି ନିର୍ଭର ଯୋଗ୍ୟ ପ୍ରମାଣ ନାହିଁ । କିନ୍ତୁ ଦେବତା ଓ ରାକ୍ଷସମାନଙ୍କ ମଧ୍ୟରେ ଗୋଟିଏ ଭୟଙ୍କର ଲଢେଇ ହୋଇଥିବା କଥା ପୁରାଣରେ ବର୍ଣ୍ଣିତ ହୋଇଛି । ଯୁଦ୍ଧ କ୍ଷେତ୍ରରୁ ଖବର ନେବାରେ ଜଣାଗଲା ଯେ, ଶେଷରେ ରାକ୍ଷସମାନେ ଜୟଯୁକ୍ତ ହେବେ ।

ଦେବତାମାନଙ୍କର ରାଜା, ଇନ୍ଦ୍ର ତାଙ୍କର ଗୁରୁ ବୃହସ୍ପତିଙ୍କୁ ନିଜ ଦରବାରକୁ ଡକାଇଲେ । ଇନ୍ଦ୍ରଙ୍କର ପତ୍ନୀ ଇନ୍ଦ୍ରାଣୀ ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ଗୁରୁଦେବ କିଛି କହିବା ପୂର୍ବରୁ ଇନ୍ଦ୍ରାଣୀ ଆଗେ ଉଠି ପଡ଼ି କହିଲେ, 'ଦେବତାମାନେ କିପରି ଜୟଯୁକ୍ତ ହେବେ, ସେ କଥା ମୁଁ ଜାଣେ । ମୁଁ କଥା ଦେଉଛି ଯେ, ଆମ୍ଭେମାନେ ନିଶ୍ଚେ ଜିତିବା ।'

ତା' ପରଦିନ ଥିଲା ଶ୍ରାବଣ ପୂର୍ଣ୍ଣିମା । ଇନ୍ଦ୍ରାଣୀ ଶାସ୍ତ୍ର ଅନୁସାରେ ଗୋଟିଏ କବଚ ତିଆରି କରି ତାଙ୍କ ସ୍ୱାମୀଙ୍କ ହାତରେ ବାନ୍ଧି ଦେଲେ । ଇନ୍ଦ୍ର କବଚ ପିନ୍ଧି, ଯୁଦ୍ଧ ପଡ଼ିଆରେ ଠିକ୍ ପହଞ୍ଚିଛନ୍ତି କି ନାହିଁ ରାକ୍ଷସମାନେ ଭୟରେ କିଏ କେଉଁଆଡ଼େ ଛିନ୍ନଛତ୍ର ହୋଇ ପଳାଇଗଲେ । ଅସୁରମାନେ ପରାଜିତ ହେଲେ । ଦେବତାମାନେ ଜୟଯୁକ୍ତ ହେଲେ ।

ଆଜିର ରକ୍ଷା ବନ୍ଧନ ଏଇ ବିଶ୍ୱାସରୁ ସୃଷ୍ଟି ହୋଇଥିବାର ଅନୁମାନ କରାଯାଏ । ଶାସ୍ତ୍ରରେ ଲେଖାଥିବା ନିୟମ ଅନୁଯାୟୀ ଗୋଟିଏ ଡୋର

ତିଆରି କରି ତାକୁ ଯଦି ଶ୍ରାବଣ ପୂର୍ଣ୍ଣିମା ଦିନ କୌଣସି ଲୋକ ନିଜ ହାତରେ ବାନ୍ଧେ, ତେବେ ସେ ବର୍ଷକ ଯାକ ତା'ର ସ୍ୱାସ୍ଥ୍ୟ ଭଲ ରହିବ ତଥା ସବୁ କାମରେ ତା'ର ଜୟ ହେବ ବୋଲି ବିଶ୍ୱାସ କରାଯାଏ ।

ରକ୍ଷା ବନ୍ଧନ ପର୍ବର ମୂଳ ଯାହା ହେଉ ନା କାହିଁକି ଆଜିକାଲି ଏହା ହେଉଛି ଭଉଣୀମାନଙ୍କର ଗୋଟିଏ ପର୍ବ ଏବଂ ଭାଇମାନଙ୍କ ପ୍ରତି ସେମାନଙ୍କର ସ୍ନେହର ପ୍ରତୀକ । ଭାଇଟି ଯେଉଁଠି ଥାଉ ନା କାହିଁକି, ଏପରିକି ସେ ସାତ ସମୁଦ୍ର ତେର ନଈ ପାରିରେ ଥାଉ, ଏଇ ଦିନ ସେ ନିଶ୍ଚେ ତା'ର ହାତରେ ଗୋଟିଏ ରଙ୍ଗୀନ ଡୋର ବାନ୍ଧିବ । କୌଣସି ଗୋଟିଏ ଝିଅ ସଂପୂର୍ଣ୍ଣ ଅପରିଚିତା ହେଲେ ମଧ୍ୟ ସେ ଯଦି କୌଣସି ଜଣେ ଯୁବକର ହାତରେ ରକ୍ଷୀ ବାନ୍ଧି ଦିଏ, ତେବେ ସେଇ ମୁହୂର୍ତ୍ତରୁ ସେ ଦୁହେଁ ଭାଇ ଭଉଣୀ ରୂପେ ବିବେଚିତ ହୁଅନ୍ତି ଏବଂ ଯେ କୌଣସି ରକ୍ତ ସମ୍ପର୍କୀୟଠାରୁ ପରସ୍ପର ଅଧିକ ଆପଣାର ବୋଲି ମନେ କରନ୍ତି । ସୁତରାଂ, ଏଇ ବିଧିର ପବିତ୍ରତା କେତେ, ତାହା ଏଇ ଘଟଣାରୁ ସହଜରେ ଜାଣି ହୁଏ ।

ପର୍ବର ଅନେକ ଦିନ ଆଗରୁ ବିଭିନ୍ନ ସ୍ଥାନରେ ଉଠା ଦୋକାନମାନ ଖୋଲିଯାଏ ଏବଂ ହାତରେ ବାନ୍ଧିବା ନିମନ୍ତେ ରଙ୍ଗ ରଙ୍ଗିଆ, ଚକ୍‌ମକ୍ ରକ୍ଷୀ ଡୋରରେ ସେ ସବୁ ଭର୍ତ୍ତି ହୋଇଯାଏ । କେତେକ ଛୋଟ ସହରରେ ବଜାରସାରା ବିଭିନ୍ନ ଆକାର ପ୍ରକାରର ଏବଂ ନାଲି, ନେଳି, ହଳଦୀ, ସବୁଜ ଇତ୍ୟାଦି ଭିନ୍ନ ଭିନ୍ନ ରଙ୍ଗର, ସୁନେଲି, ରୂପେଲି ଜରିଲଗା ରକ୍ଷୀ ବ୍ୟତୀତ ଆଉ କିଛି ବିକ୍ରି ହୁଏ ନାହିଁ । ଉଠା ଦୋକାନମାନଙ୍କରେ ରକ୍ଷୀ ଭଳି ନାନାରଙ୍ଗର ବଢିଆ ବଢିଆ ପୋଷାକ ପିନ୍ଧି ଟିକି ଟିକି ଝିଅମାନଙ୍କ ଠାରୁ ଆରମ୍ଭ କରି ମଧ୍ୟ-ବୟସ୍କା ମାଆ ମାନଙ୍କ ପର୍ଯ୍ୟନ୍ତ ସବୁ ବୟସର ସ୍ତ୍ରୀଲୋକ ଦଳଦଳ ହୋଇ ଆସି ରକ୍ଷୀ କିଣୁଥିବାର ଦେଖି ପାରିବ । ରକ୍ଷୀର ମୂଲ୍ୟ ଭିନ୍ନ ଭିନ୍ନ । ଖଣ୍ଡିଏ ରଙ୍ଗୀନ ସୂତାକୁ ପାଞ୍ଚ ପଇସାଠାରୁ ଆରମ୍ଭ କରି, ସେଥିରେ ଚମକଦାର ସୁନେଲି ରୂପେଲି ଜରି ସୂତା ଲାଗିଥିଲେ ତା'ର ମୂଲ୍ୟ ପାଞ୍ଚ ଟଙ୍କା ପର୍ଯ୍ୟନ୍ତ ହୁଏ ।

ଏହା ସଙ୍ଗେ ସଙ୍ଗେ ମିଠା ଦୋକାନୀମାନଙ୍କର ମଧ୍ୟ ବେଶ କାରବାର ହୁଏ । ସେମାନେ ତାଙ୍କର ଲଡୁ, ଜିଲିପି, ବରଫି, ବାଲୁସାହି, ଇମାର୍ତ୍ତି, ଗୋଲାପଜାମୁ, ରସଗୋଲା, ଚମ୍‌ଚମ୍ ଇତ୍ୟାଦି ଲୋଭନୀୟ ମିଠେଇ ଗୁଡିକ ଦୋକାନରେ ସଜେଇ ରଖନ୍ତି । ସେଗୁଡିକ ପ୍ରତି ତୁମେ ଆଖି ଯେତେ ବୁଲାଇବ ତୁମର ଜିଭ ସେତେ ଲାଳେଇ ଉଠିବ । ମିଠା ଖାଇଲେ ଯେ, ଦାନ୍ତ ଖରାପ ହୁଏ ଏବଂ ହଜମ ଶକ୍ତି ମାନ୍ଦା ହୁଏ, ଏ ବିଷୟରେ ଡାକ୍ତରଙ୍କର ସବୁ

ପ୍ରକାର ସତର୍କବାଣୀ ତୁମେ ଭୁଲିଯିବ ଏବଂ ଭାବିବ ରକ୍ଷାବନ୍ଧନ ପାଇଁ ମିଠା ନିଶ୍ଚୟ ଆବଶ୍ୟକ ।

ପୂର୍ଣ୍ଣମୀ ଦିନ ରାତି ପାହିବା ମାତ୍ରେ ଝିଅମାନଙ୍କର ଆନନ୍ଦ ଦେଖି-ବାର କଥା । ଅନ୍ୟ କୌଣସି ଦିନ ହୋଇଥିଲେ ସେମାନେ ଡେରିଯାଏ ଶୋଇ ପଡ଼ି ପାରନ୍ତି; କିନ୍ତୁ ରାକ୍ଷୀ ପୂର୍ଣ୍ଣମୀ ଦିନ ରାତି ପାହିବା ପୂର୍ବରୁ ସେମାନଙ୍କର ନିଦ ଭାଙ୍ଗିଯାଏ । ଶୀଘ୍ର ଶୀଘ୍ର ଗାଧୁଆ ପାଧୁଆ ସାରି ସେମାନେ ନିଜ ନିଜର ପେଡ଼ି ଲୁଗା ସବୁ ପିନ୍ଧି ପକାନ୍ତି । ସେତେ-ବେଳକୁ ସେମାନଙ୍କର ଭାଇମାନେ ମଧ୍ୟ ଗାଧୋଇ ସାରି ପୋଷାକ ପିନ୍ଧି ସାରିଥାଆନ୍ତି । ତା'ପରେ ଝିଅମାନେ କାଗଜ ପଟା ଉପରେ ସେମିତି ଲଗା ହୋଇ ରହିଥିବା ରାକ୍ଷୀକୁ ମିଠେଇ ଥାଳିରେ ରଖନ୍ତି । ତା'ପରେ ମୁଣ୍ଡରେ ଓଢ଼ଣା ଦେଇ, ଭଉଣୀ ତା'ର ଭାଇ ଆଗରେ ଯାଇ ବସେ । ଭାଇର ମଥାରେ ଭଉଣୀ ସିନ୍ଦୂର, ହଳଦୀ ଓ ଅରୁଆ ଚାଉଳ ଚୂନା ନେଇ ବୋଳେ । କାଗଜ ପଟାରୁ ରଙ୍ଗୀନ ରାକ୍ଷୀଟିକୁ ଖୋଲି ତା' ହାତରେ ବାନ୍ଧି ଦିଏ । ତା'ପରେ ସେ ହାତରେ ଗୋଟିଏ ମିଠେଇ ଧରି ହସି ହସି ଭାଇ ପାଟିରେ ଭରିଦିଏ । ଯା ବଦଳରେ ଭାଇ ସ୍ନେହର ନିଦର୍ଶନ ସ୍ୱରୂପ ଥାଳିରେ କିଛି ପଇସା ପକାଏ । ଏହାର ପରିମାଣ ଟଙ୍କାଟିଏ ଠାରୁ ଆରମ୍ଭ କରି ଯାହା ହୋଇ-ପାରେ । ଝିଅମାନେ ଭାଇମାନଙ୍କ ହାତରେ ରାକ୍ଷୀ ବାନ୍ଧିବା ପର୍ଯ୍ୟନ୍ତ ଉଭୟେ କେହି କିଛି ଖାଆନ୍ତି ନାହିଁ । ସଞ୍ଜ ପର୍ଯ୍ୟନ୍ତ ସାରାଦିନ ଭାଇର ହାତରେ ରାକ୍ଷୀ ସେମିତି ବନ୍ଧା ହୋଇ ରହେ । ଏହି ପର୍ବରେ ପୁରୀ ଛାଣିବା ଏବଂ ସିମେଇ ହାଲୁଆ ତିଆରି କରିବା ହେଉଛି ଗୋଟିଏ ବିଧି ।

ଯେତେବେଳେ ଭଉଣୀଟିଏ ଭାଇ ହାତରେ ରାକ୍ଷୀ ବାନ୍ଧେ, ସେ ତା'ର ସବୁ କାମରେ ସୁଖ ଶାନ୍ତି ଓ ସଫଳତା କାମନା କରେ । ତା' ବଦଳରେ ଭାଇ ଶେଷ ରକ୍ତ ବିନ୍ଦୁ ଦେଇ ଭଉଣୀର ଆତ୍ମସମ୍ମାନ ରକ୍ଷା କରିବ ବୋଲି ଶପଥ କରେ ।

ରାକ୍ଷୀ ପୂର୍ଣ୍ଣମୀ ଦିନ ବ୍ରାହ୍ମଣ ଓ ପୁରୋହିତମାନେ ସେମାନଙ୍କର ଯଜମାନ ହାତରେ ରାକ୍ଷୀ ବାନ୍ଧନ୍ତି ଓ ତା ବଦଳରେ ସେମାନଙ୍କଠାରୁ କିଛି ଦକ୍ଷିଣା ପାଆନ୍ତି । ଦେଶର କେତେକ ଅଞ୍ଚଳରେ ଘର କାନ୍ଥରେ ଚିତ୍ର ଅଙ୍କନ କରି, ସେଥିରେ ସିନ୍ଦୂର ଲଗାଇ, କ୍ଷୀର ଦେଇ ପୂଜା କରିବାର ବିଧି ପ୍ରଚଳିତ । ଘର ଦୁଆର ମୁହଁର ଦୁଇ ପାଖରେ ହାତ ପାପୁଲିର ଛାପ ଦିଆ-ଯାଏ ଏବଂ ତା' ଉପରେ ରାକ୍ଷୀ ଲଗାଇ ଦିଆଯାଏ ।

ଭାରତରେ ସେଇ ଗୋଟିଏ ପ୍ରକାର ପର୍ବ ଭିନ୍ନ ଭିନ୍ନ ଅଞ୍ଚଳରେ

ଭିନ୍ନ ଭିନ୍ନ ଢଙ୍ଗରେ ପାଳନ କରାଯାଏ । ଠିକ୍ ସେହିଭଳି ଢଙ୍ଗରେ ରକ୍ଷା-ବନ୍ଧନ ପର୍ବଟି 'ରକ୍ଷୀ', 'ରଖରୀ', 'ସାଲୁନୋ' ଇତ୍ୟାଦି ଭିନ୍ନ ଭିନ୍ନ ନାମରେ ପରିଚିତ ।

ଯଦିଓ ରକ୍ଷୀ ପୂର୍ଣ୍ଣମୀରେ ବାଣଫୁଟା ହୁଏ ନାହିଁ କି ଡ୍ରମ ବାଜା ବାଜେ ନାହିଁ ବା ଘରଦ୍ୱାର ରଙ୍ଗୀନ ଆଲୋକରେ ସଜାଯାଏ ନାହିଁ; ତଥାପି ଏହି ପର୍ବର ଏକ ବିଶେଷତ୍ୱ ଅଛି । ଭଉଣୀମାନେ ରକ୍ଷୀ ବାନ୍ଧିଲା ବେଳେ ଭାଇ-ମାନେ ସେମାନଙ୍କୁ ଯେଉଁ ଟଙ୍କା ଉପହାର ଦିଅନ୍ତି, ତାହା ବାହାରୁ ଦେଖିଲେ ସାମାନ୍ୟ ବୋଲି ମନେହେଲେ ମଧ୍ୟ ଝିଅମାନଙ୍କ ପକ୍ଷେ ଏହାର ମୂଲ୍ୟ ସଂସାରର ଅନ୍ୟ ଯେ କୌଣସି ମୂଲ୍ୟବାନ ଜିନିଷଠାରୁ ଢେର ଅଧିକ। ଇତିହାସରେ ଏଇଭଳି ଅନେକ ଦୃଷ୍ଟାନ୍ତ ଅଛି । ଖଣ୍ଡିଏ ମୂଲ୍ୟହୀନ ସୂତାର ଯଥାର୍ଥ ମହତ୍ତ୍ୱ କେତେ ତାହା ଯୁଦ୍ଧ କ୍ଷେତ୍ରରେ ପ୍ରମାଣିତ ହୋଇଛି । ଏଭଳି ଏକ ଖୁବ୍ ଜଣାଶୁଣା କାହାଣୀ ହେଉଛି, ମହାରାଣୀ କରୁଣାବତୀ ବା କର୍ମ-ବତୀଙ୍କର କାହାଣୀ । କଥିତ ଅଛି ଯେ, ଶାସକ ବାହାଦୁର ଶାହ ଥରେ କରୁଣାବତୀଙ୍କର ରାଜ୍ୟକୁ ଅବରୋଧ କଲେ । କରୁଣାବତୀ ବାହାଦୁର ଶାହଙ୍କ ନେତୃତ୍ୱରେ ପରିଚାଳିତ ଅକଳନ୍ତି ସୈନ୍ୟବାହିନୀକୁ ଦେଖି ହତାଶ ହୋଇ ପଡିଲେ । ହଠାତ୍ ତାଙ୍କର ସମ୍ରାଟ ହୁମାୟୁନଙ୍କ କଥା ମନେପଡି ଗଲା । ସେ ତାଙ୍କ ପାଖକୁ ଗୋଟିଏ ରକ୍ଷୀ ପଠାଇ ଦେଲେ । ସାଧାରଣଭାବେ ସମ୍ରାଟ ହୁମାୟୁନ କେବେ ବାହାଦୁର ଶାହଙ୍କ ବିରୁଦ୍ଧରେ ଲଢୁଥିବା ଜଣେ ହିନ୍ଦୁ ମହାରାଣୀଙ୍କୁ ସାହାଯ୍ୟ କରି ନ ଥାନ୍ତେ; କିନ୍ତୁ ରକ୍ଷୀର ପରମ୍ପରା ଏତେ ସୁଦୃଢ ଥିଲା ଯେ, ସମ୍ରାଟ ହୁମାୟୁନ ତତ୍କ୍ଷଣାତ୍ ମେବାର ଅଭିମୁଖେ ବାହାରି ପଡିଲେ । ହୁମାୟୁନ କିନ୍ତୁ ସେଠାରେ ପହଞ୍ଚିଲା ବେଳକୁ ମହା-ରାଣୀ ନିଆଁରେ ଝାସ ଦେଇ ସାରିଥିଲେ । ସମ୍ରାଟ ଦୁଃଖରେ ଭାଙ୍ଗି ପଡିଲେ, ତଥାପି ସେ ବାହାଦୁର ଶାହଙ୍କୁ ଗୋଡେଇ ଗୋଡେଇ ବନ୍ଦୀ କଲେ । ବାହାଦୁର ଶାହଙ୍କ ସୈନ୍ୟମାନେ ଛତ୍ରଭଙ୍ଗ ହୋଇ ପଳା-ୟନ କଲେ । ମୋଗଲ ଇତିହାସରେ ମୋଗଲ ସମ୍ରାଟମାନେ ହିନ୍ଦୁ ରମଣୀମାନଙ୍କଠାରୁ ରକ୍ଷୀ ଗ୍ରହଣ କରିବା ଏବଂ ସେମାନଙ୍କର ସମ୍ମାନ-ରକ୍ଷା ନିମନ୍ତେ ପଣ କରିବାର ବହୁ ଉଦାହରଣ ଅଛି । ରାଜସ୍ଥାନର ଇତି-ହାସରେ, ଜଣକୁ ଭାଇ ବୋଲି ମାନି ରକ୍ଷୀ ବାନ୍ଧି ଦେଇଥିବା ନାରୀମାନ-ଙ୍କର ସମ୍ମାନ ରକ୍ଷା କରିବାକୁ ଯାଇ ବହୁ ପୁରୁଷ ପ୍ରାଣ ଦେଇଥିବାର ଉଦା-ହରଣ ଭରପୂର । ସ୍ୱାଧୀନତା ସଂଗ୍ରାମ ସମୟରେ ବହୁ ମହିଳା, ପୁରୁଷ ମାନଙ୍କ ହାତରେ ରକ୍ଷୀ ପିନ୍ଧାଇ, ଦେଶର ସ୍ୱାଧୀନତା ନିମନ୍ତେ ସେମାନଙ୍କୁ

ଜୀବନ ପଣ କରୁଛନ୍ତି । ସମ୍ଭବତଃ ଏଇ କାରଣରୁ ବଙ୍ଗଳାର ପ୍ରସିଦ୍ଧ ନେତା ସୁରେନ୍ଦ୍ର ନାଥ ବାନାର୍ଜୀ ରକ୍ଷାବନ୍ଧନ ପର୍ବକୁ ଗୋଟିଏ ଜାତୀୟ ପର୍ବରେ ପରିଣତ କରିବାକୁ ଚେଷ୍ଟା କରିଥିଲେ ।

ଯେଉଁ ସ୍ତ୍ରୀଲୋକମାନଙ୍କର ଭାଇ ନାହାନ୍ତି ଅଥବା ଯେଉଁ ପୁରୁଷମାନଙ୍କର ଭଉଣୀ ନାହାନ୍ତି, ସେମାନେ ସହାନୁଭୂତିର ପାତ୍ର । ଭଗବାନ ସେମାନଙ୍କୁ ଯଦି ଗୋଟିଏ ବର ମାଗିବାକୁ କହନ୍ତେ, ତାହେଲେ ସେ ଗୋଟିଏ ସ୍ତ୍ରୀଲୋକ ହୋଇଥିଲେ ସୁଖ ସୌଭାଗ୍ୟ ମାଗିବା ପରିବର୍ତ୍ତେ ଭାଇଟିଏ ଏବଂ ପୁରୁଷ ଲୋକଟିଏ ହୋଇଥିଲେ ଭଉଣୀଟିଏ ଯେ ମାଗନ୍ତା, ଏଥିରେ କୌଣସି ସନ୍ଦେହ ନାହିଁ ।

ମୂଳହିନ୍ଦୀ : ପୃଥ୍ୱୀରାଜ୍ ମୋଙ୍ଗା



# ଓନାମ୍

ପ୍ରକୃତି ରାଣୀ ସର୍ବଶୋଭାରେ ଭରପୂର । ଶୀତ ଋତୁ ଚାଲିଯାଉଛି । ପୃଥିବୀ ସବୁଜିମାରେ ସୁମଣ୍ଡିତ । ସକାଳ ସୂର୍ଯ୍ୟ ପଶ୍ଚିମଘାଟ ପର୍ବତ ଫାଙ୍କରେ ଉଙ୍କି ମାରୁଛି । ଆରବ ସାଗରର ତରଙ୍ଗଧ୍ୱନି ବେଳାଭୂମିରେ ଉଚ୍ଛୁଳି ପଡୁଛି । ରୂପେଲି ବାଲିଗୁଡିକ ଚିକ୍‌ଚିକ୍ କରୁଛି ଏବଂ ନାରିକେଳ କୁଞ୍ଜ ଧୀର ପବନରେ ଆନ୍ଦୋଳିତ ହୋଇ ଶିରି ଶିରି ଶବ୍ଦ ସୃଷ୍ଟି କରୁଛି । ପକ୍ଷୀମାନେ ଏ ଡାଳରୁ ସେ ଡାଳକୁ ଡେଇଁ ଡେଇଁ ସଙ୍ଗୀତର ସୁର ଫଟାଇ ଦେଉଛନ୍ତି । ଦିନରେ ସୂର୍ଯ୍ୟକିରଣ ଝଲମଲ, ରାତିରେ ଆକାଶ ମେଘହୀନ ଓ ନିର୍ମଳ । ଏଇ ହେଉଛି 'ଓନାମ୍' ପର୍ବର ଅସଲ ସମୟ ।

ଏ ପର୍ଯ୍ୟନ୍ତ ସକାଳ ହୋଇ ନାହିଁ । ଏତିକିବେଳେ କୌଣସି ଏକ ଦୂର ସ୍ଥାନରୁ ଶୁଣିପାରିବ ଶିଶୁମାନଙ୍କର କୋଳାହଳ ଓ ସଙ୍ଗୀତ । ନିକଟସ୍ଥ ପାହାଡ, ଉପତ୍ୟକା ଓ ଉଦ୍ୟାନରୁ ଫୁଲ ତୋଳିବା ପାଇଁ ସେମାନେ ବାହାରି ପଡିଛନ୍ତି । ନାନା ଜାତିର ଫୁଲ ତୋଳି, ବିଶେଷ କରି ମାଲାୟାଲମ ଭାଷାରେ କୁହାଯାଉଥିବା 'ଥୁମା' ନାମକ ଏକ ଛୋଟ ଧଳା ଫୁଲ ସଂଗ୍ରହ କରି ସଅଳ ସଅଳ ସେମାନେ ଘରକୁ ଫେରିବେ ଏବଂ ଗୋବର ଲିପା ଅଗଣାରେ ସେଗୁଡିକ ନେଇ ସଜାଇବେ ।

ହଁ, ଓନାମ ହେଉଛି ଗୋଟିଏ ଫୁଲ ମଉଚ୍ଛବ ବା ବସନ୍ତୋତ୍ସବ । ବିଭିନ୍ନ ରଙ୍ଗର ଫୁଲର ସାଜସଜ୍ଜା ଏଇ ପର୍ବର ଏକ ପ୍ରଧାନ ଅଙ୍ଗ । ଧାନ କଟାକଟି ସରିଯାଇଛି, ଅମାରଗୁଡିକ ଶସ୍ୟରେ ଭରପୂର । ଚାଷୀମାନଙ୍କର କାମଦାମର କୌଣସି ଜଞ୍ଜାଳ ନାହିଁ । ସେମାନେ ହସଖୁସିରେ ମାତିବାକୁ ପ୍ରସ୍ତୁତ ।

ଅନ୍ୟାନ୍ୟ ଅନେକ ପର୍ବଭଳି 'ଓନାମ' ପଛରେ ଗୋଟିଏ କିମ୍ବଦନ୍ତୀ ନିହିତ ଅଛି । ପୂର୍ବକାଳରେ ମହାବଳୀ ନାମରେ ଜଣେ ଅସୁର ରାଜା କେରଳରେ ରାଜତ୍ୱ କରୁଥିଲେ । ସେ ଜଣେ ସୁଦକ୍ଷ ଓ ଚତୁର ଶାସକ ଥିଲେ ଏବଂ ପ୍ରଜାମାନେ ତାଙ୍କୁ ଖୁବ୍ ଭଲ ପାଉଥିଲେ ! ସେ ଯେତେବେଳେ ସ୍ୱର୍ଗ ଓ ପାତାଳ ପର୍ଯ୍ୟନ୍ତ ତାଙ୍କ ରାଜ୍ୟର ସୀମା ବିସ୍ତାର କଲେ, ଦେବତାମାନେ ତାଙ୍କ ପ୍ରତି ଈର୍ଷା ପରାୟଣ ହୋଇ ପଡିଲେ । ତେଣୁ ଦେବରାଜ ଇନ୍ଦ୍ର ତାଙ୍କୁ ତଡିବା ପାଇଁ ଗୋଟିଏ ଯୋଜନା କଲେ ।

କଥା ହେଲା, ଭଗବାନ ବିଷ୍ଣୁ ଏଇ ଯୋଜନାକୁ କାର୍ଯ୍ୟକାରୀ

କରିବେ । ଗୋଟିଏ ବ୍ରାହ୍ମଣ ବାଳକର ବେଶ ଧରି, ବାମନ ରୂପରେ ସେ ଅସୁର ରାଜା ନିକଟରେ ଯାଇ ଉପସ୍ଥିତ ହେଲେ ଏବଂ ତିନୋଟି ପାଦ ଥୋଇବା ପାଇଁ ମାତ୍ର ତିନିପାଦ ଭୂମି ତାଙ୍କୁ ଦାନ ମାଗିଲେ । ରାଜା ମହାବଳୀ ଉଦାର ମନରେ ଏଥିରେ ରାଜି ହେଲେ । ଛଦ୍ମବେଶୀ ବାମନ ଏଥର କ୍ରମେ ନିଜର ଆକାର ବଢ଼ାଇବାକୁ ଲାଗିଲେ ଏବଂ ବଢ଼ି ବଢ଼ି ବିଶ୍ୱରୂପ ଧାରଣ କଲେ । ତା'ପରେ ସେ ତାଙ୍କର ଦୁଇଟି ବିରାଟ ପାଦ ବାହାର କରି ସେ ଦୁଇ ପାଦରେ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ—ତିନି ଭୁବନକୁ ନେଇଗଲେ । ବର୍ତ୍ତମାନ ସେ ତୃତୀୟ ପାଦଟି କେଉଁଠି ଥୋଇବେ ?

ବାମନ ରୂପୀ ଭଗବାନ ମହାବଳୀଙ୍କୁ ପଚାରିଲେ । ରାଜା ଥିଲେ ଜଣେ ନୀତିବାଦୀ ଲୋକ ଏବଂ ସବୁବେଳେ ନିଜ କଥା ରକ୍ଷା କରୁଥିଲେ । ସେ ସାଙ୍ଗେ ସାଙ୍ଗେ ନିଜର ମୁଣ୍ଡ ଦେଖାଇ ଦେଇ, ତାଆରି ଉପରେ ବାମନ ନିଜର ତୃତୀୟ ପାଦ ରଖନ୍ତୁ ବୋଲି କହିଲେ । ବାମନ ଆଉ କାଳବିଳମ୍ବ ନ କରି ମହାବଳୀଙ୍କର ମୁଣ୍ଡ ଉପରେ ପାଦଟି ରଖି ତାଙ୍କୁ ରସାତଳକୁ ଚାପି ଦେଲେ ।

ବିଷ୍ଣୁ ଅଦୃଶ୍ୟ ହୋଇଯିବା ପୂର୍ବରୁ ମହାବଳୀ ତାଙ୍କୁ ଗୋଟିଏ ବର ମାଗିଲେ । ସେ ତାଙ୍କ ଲୋକମାନଙ୍କୁ ଦେଖିବା ନିମନ୍ତେ ପ୍ରତିବର୍ଷ ଥରେ ମାତ୍ର ପୃଥିବୀ ଉପରକୁ ବୁଲି ଆସିବେ ବୋଲି ଭଗବାନଙ୍କର ଅନୁମତି ମାଗିଲେ । ବିଷ୍ଣୁ ତାଙ୍କର ଏହି ପ୍ରାର୍ଥନାକୁ ମଞ୍ଜୁର କଲେ ।

ଓନାମ ପର୍ବ ହେଉଛି ମହାବଳୀଙ୍କର ତ୍ୟାଗ ପ୍ରତି ଏକ ଶ୍ରଦ୍ଧାଞ୍ଜଳି । ମହାବଳୀଙ୍କର ରାଜତ୍ୱର ସୁଖକର ଦିନଗୁଡ଼ିକୁ ମନେ ପକାଇ କେରଳବାସୀ ଯଥାସମ୍ଭବ ଆନନ୍ଦ ଓ ଆଡମ୍ବର ସହିତ ତାଙ୍କର ବାର୍ଷିକ ଘର ବାହୁଡ଼ା ଉତ୍ସବ ପାଳନ କରନ୍ତି । ସେଇ ପ୍ରାଚୀନ ଗୌରବମୟ କାହାଣୀକୁ ଗୋଟିଏ ଲୋକ ଗୀତରେ ବର୍ଣ୍ଣନା କରାଯାଇଛି ଏବଂ ସେଇ ଗୀତଟି କେରଳରେ ସବୁଆଡ଼େ ବୋଲାଯାଏ । ଗୀତର ଅର୍ଥ ହେଉଛି—

ମହାବଳୀ ଥିଲେ ଦେଶର ରାଜା<br>
ପ୍ରଜାଏ ଥିଲେ ସମାନ<br>
ସେମାନେ ଥିଲେ ସୁଖରେ<br>
କାହାରି ନ ଥିଲା ବିପଦ<br>
ନ ଥିଲା ମିଛ, ନ ଥିଲା ଠକେଇ ଇତ୍ୟାଦି ।

ଦଶଦିନିଆ ଓନାମ ପର୍ବ ପ୍ରଥମେ ରାଜା ମହାବଳୀଙ୍କ ପ୍ରତି ପୂଜା ଅର୍ଘ୍ୟ ଦେଇ ଆରମ୍ଭ କରାଯାଏ ।

ମହାବଳୀ ଏବଂ ବିଷ୍ଣୁଙ୍କର ପ୍ରତୀକ ସ୍ୱରୂପ ବର୍ଗାକାର ପିରମିଡ ଆକୃତିର ମାଟି ପିଣ୍ଡି ସ୍ଥାପନ କରି ତା ଉପରେ ସୁନ୍ଦର ଭାବରେ ଫୁଲ ସଜାଯାଏ ।

ବିଧି ଅନୁଯାୟୀ ପ୍ରାର୍ଥନା ଓ ପୂଜାପାଠ କରାଯାଏ । ତା' ପରେ ଘରର ମୁରବୀ ପରିବାରର ଅନ୍ୟାନ୍ୟ ଲୋକ ଏବଂ ବନ୍ଧୁବାନ୍ଧବଙ୍କୁ ନୂଆ ଲୁଗା ଉପହାର ଦିଅନ୍ତି । ଏହାପରେ ପ୍ରତି ଘରେ ନିଜ ନିଜର ଶକ୍ତିକୁ ଚାହିଁ ଖୁବ୍ ଆଡମ୍ବରରେ ଭୋଜିଭାତ କରାଯାଏ ।

ଏ ସବୁ ଶେଷରେ ନାଚଗୀତ ଓ ଖେଳ କସରତ ଥାଏ । 'କାଇ-କୋଟ୍ଟିକ୍କାଲି' ନାମକ କେତେକ ନିର୍ଦ୍ଦିଷ୍ଟ ନାଚ ଏବଂ ଖେଳ ପାରମ୍ପରିକ ଭାବେ ଓନାମ ପର୍ବ ସହିତ ସଂପୃକ୍ତ । ସବୁଠୁ ମଜା ହେଉଛି ସେଠାକାର 'ଅରନମୁଲା ବୋଟ୍ ରେସ' । ପାଣିରେ ସାପ ଭଳି ଭାସି ଭାସି ଯାଉଥିବା ସାପୁଆ ଡଙ୍ଗାଗୁଡିକ ଦେଖିବା ପାଇଁ ଏବଂ ପ୍ରତିଯୋଗିତାରେ ସେଗୁଡିକୁ ଉତ୍ସାହିତ କରିବା ପାଇଁ ଚାରିଆଡୁ ବହୁ ସଂଖ୍ୟାରେ ସ୍ତ୍ରୀ ପୁରୁଷ ଓ ପିଲାଛୁଆ ଆସି କୂଳରେ ରୁଣ୍ଡ ହୁଅନ୍ତି । ଆଜିକାଲି ଅବଶ୍ୟ ସେଇ ପୁରୁଣାକାଳିଆ ଖେଳ କୌତୁକରେ ଲୋକମାନଙ୍କର ଆଉ ଆଦର ନାହିଁ । ତା' ସ୍ଥାନରେ ସିନେମା ଏବଂ ଆଧୁନିକ ରୁଚିର ମଉଜ ମଜଲିସ ପହଞ୍ଚିଗଲାଣି । ଓନାମ ପର୍ବ ସମ୍ପର୍କରେ ୮୬୧ ଖ୍ରୀଷ୍ଟାବ୍ଦର ଏକ ତମ୍ବାପଟା ହେଉଛି ସବୁଠାରୁ ପୁରୁଣା ରେକର୍ଡ । କିନ୍ତୁ ଐତିହାସିକମାନେ ବିଶ୍ୱାସ କରନ୍ତି ଯେ, ଏହା ପୂର୍ବରୁ ମଧ୍ୟ ଦକ୍ଷିଣ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଏହି ଉତ୍ସବ ପାଳନ କରାଯାଉଥିଲା ।

ମଜାର କଥା ହେଉଛି, ଓନାମ ପର୍ବରେ ରଜା ମହାବଳୀଙ୍କ ସହିତ ତାଙ୍କୁ ପାତାଳଗାମୀ କରିଥିବା ଭଗବାନ ବିଷ୍ଣୁଙ୍କୁ ମଧ୍ୟ ପୂଜା କରାଯାଏ । ଏଇ ବିଧିଟି ଅବଶ୍ୟ ପରେ ଯୋଡାଯାଇଛି ଏବଂ ଏହା ପ୍ରାୟ ବୈଷ୍ଣବ ଯୁଗରେ ଘଟିଥିବାର ବିଶ୍ୱାସ କରାଯାଏ । କୋଚିନ ନିକଟସ୍ଥ ତ୍ରିକାକରା ଠାରେ ବାମନଙ୍କ ଉଦ୍ଦେଶ୍ୟରେ ଗୋଟିଏ ମନ୍ଦିର ନିର୍ମାଣ କରାଯିବା ପରେ ଓନାମ ପର୍ବ ଅଧିକ ଲୋକପ୍ରିୟ ହୋଇଛି । ଏହି ମନ୍ଦିରଟି ଅଷ୍ଟମ ଶତା-ବ୍ଦୀରେ ନିର୍ମିତ ହୋଇଥିବାର ବିଶ୍ୱାସ କରାଯାଏ ।

କେତେକ ଐତିହାସିକ କହନ୍ତି ଯେ, ଏଇ ଉତ୍ସବଟି ପ୍ରଥମେ ଆସି-ରୀୟା ଦେଶରେ ପାଳିତ ହେଉଥିଲା । ହୁଏତ ଦ୍ରାବିଡମାନଙ୍କର ପୂର୍ବପୁରୁଷ-ମାନେ ସେଇ ଅଞ୍ଚଳରୁ ଭାରତକୁ ଆସିଥିଲେ ଏବଂ ମହାବଳୀ ଥିଲେ ସେଇ-ମାନଙ୍କର ଜଣେ ପ୍ରସିଦ୍ଧ ଶାସକ ।

ଓନାମ ପର୍ବ ସବୁରି ହୃଦୟରେ ସ୍ଥାନ ଦଖଲ କରିଥିବା କାରଣରୁ

ନୁହେଁ ବରଂ ଏହାକୁ ଜାତି ଧର୍ମ ଭେଦଭାବ ନ ରଖି ସମସ୍ତେ ସମାନ ଭାବରେ ପାଳନ କରୁଥିବାରୁ ଏହା ପ୍ରସିଦ୍ଧ । ଏହାକୁ କି ହିନ୍ଦୁ, କି ମୁସଲମାନ କି ଖ୍ରୀଷ୍ଟିୟାନ ସମସ୍ତେ ପାଳନ କରନ୍ତି ଏବଂ କେରଳର ପ୍ରତ୍ୟେକ ଲୋକର ଏହା ହେଉଛି ଆଶା ଆକାଂକ୍ଷାର ପ୍ରତୀକ ।

ମୂଳ ମଲୟାଲମ ଲେଖା  କେ. କେ. ପି. ନାୟାର



# ଇଦ୍

‘ଇଦ୍’ ହେଉଛି ଗୋଟିଏ ମୁସଲମାନ ପର୍ବ । ବର୍ଷରେ ଦୁଇଟି ଇଦ୍ ପଡେ; ଇଦୁଲ ଫିତର ଓ ଇଦୁଲ-ଯୁହା । ଏ ଦୁଇଟି ମଧ୍ୟରୁ ଇଦୁଲ ଫିତର ହେଉଛି ଅଧିକ ଲୋକପ୍ରିୟ ।

ମୁସଲମାନ ପାଞ୍ଜି, ଚନ୍ଦ୍ରମାସ ଅନୁସାରେ ତିଆରି । ନବମ ଚନ୍ଦ୍ର ମାସଟି ‘ରମଜାନ’ ନାମରେ ପରିଚିତ । ଏହି ମାସରେ ମୁସଲମାନମାନେ ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଉପବାସ ପାଳନ କରନ୍ତି । ଏହି ସମସ୍ତ ମଧ୍ୟରେ ଖାଇବା ପିଇବା କିମ୍ବା ମଉଜ ମଜଲିସ୍ କରିବା ନିଷେଧ । ଉପବାସ ନିୟମ ଏତେ କଠୋର ଯେ, ଏହି ସମସ୍ତ ମଧ୍ୟରେ ବିଡି, ସିଗାରେଟ ବା ହୁକା ପାନ କରିବା ତ ଦୂରର କଥା, ଔଷଧ ଖାଇବା ବା ଜଳ ସ୍ପର୍ଶ କରିବା ମଧ୍ୟ ନିଷେଧ । ରମଜାନ ପାଳିବା ବେଳେ ନିୟମ ହେଉଛି, ଯାହାର ଯାହା ସହିତ ମନୋମାଳିନ୍ୟ ଥିବ ତାକୁ ତୁଟାଇବାକୁ ଚେଷ୍ଟା କରିବ, କାହା ସହିତ କଳି ତକରାଳ କରିବ ନାହିଁ, କାହାରି କୁତ୍ସାରଟନା କରିବ ନାହିଁ, ମିଥ୍ୟା କହିବ ନାହିଁ, ଠକେଇ କାରବାର କରିବ ନାହିଁ ଏବଂ କାହାରିକୁ ଗାଳିଗୁଲଜ କରିବ ନାହିଁ । ଏହି ନିୟମରୁ କୌଣସି ଗୋଟିଏ ଭାଙ୍ଗିଲେ ରମଜାନ ବ୍ରତ ମାର୍ ହେଲା ଏବଂ ଯାହା କିଛି ପୁଣ୍ୟ ଅର୍ଜନ କରିଥିବ, ସେ ସବୁ ନଷ୍ଟ ହେଲା ବୋଲି ଧରାଯିବ । ଯଦି ଜଣେ ଜାଣି ଶୁଣି କିଛି ଖାଇଲା ବା ପିଇଲା, ଏପରିକି ଖାଇବା ଜିନିଷ ଚିକିଏ ଚାଖିଲା, ତା’ ହେଲେ ଉପବାସ ଭାଙ୍ଗିଲା ବୋଲି ଧରାଯିବ ଏବଂ ସେହି ଲୋକ ରମଜାନ ସରିବା ପରେ ପୁଣିଥରେ ଉପବାସ କରି ତାକୁ ଭରଣା କରିବ । ପୂରା ରମଜାନ ମାସଟି ଗୋଟିଏ ଲମ୍ବା ପର୍ବ ଭାବରେ ପାଳିତ ହୁଏ । ଏହାକୁ ତେଣୁ ପର୍ବ ମାସ ବୋଲି ମଧ୍ୟ କୁହାଯାଇପାରେ । ମୁସଲମାନମାନେ ଏହି ପର୍ବଟିକୁ ଗୁଢ ବସିଥାଆନ୍ତି, କାରଣ ଏହା ପରେ ପରେ ପରେ ଇଦୁଲ-ଫିତର ପଡେ ।

ରମଜାନ ମାସର ପ୍ରଥମ ଚନ୍ଦ୍ର ଦୃଶ୍ୟ ହେବା ସଙ୍ଗେ ସଙ୍ଗେ ଲୋକମାନେ ଇଦ୍ ପର୍ବର ଆୟୋଜନରେ ଲାଗି ପଡନ୍ତି । ଏହି ମାସରେ ପିଲାଠୁ ବୁଢା ପର୍ଯ୍ୟନ୍ତ ରାତ୍ରି ପ୍ରାର୍ଥନା ‘ଇସା’ ସହିତ ସ୍ୱତନ୍ତ୍ର ପ୍ରାର୍ଥନା ‘ଓରାଭି’ ଗାନ କରନ୍ତି । ଯେଉଁମାନେ କୋରାନ ମୁଖସ୍ଥ କରିଥାଆନ୍ତି, ସେମାନେ ଏହି ମାସଟି ମଧ୍ୟରେ ତାକୁ ଗାଇ ଶେଷ କରନ୍ତି । ପ୍ରାତଃ ଭୋଜନ ‘ଶେହରି’ ପାଇଁ ଖାଦ୍ୟ ଜିନିଷ ସାଧାରଣତଃ କ୍ଷୀରରେ ପ୍ରସ୍ତୁତ କରାଯାଇଥାଏ ଏବଂ

ଜଳଖିଆ ଖାଇସାରିବା ପରେ ଚା’ କିମ୍ବା କ୍ଷୀର ପିଆଯାଏ । ଶେହରି ସରୁନ ସରୁଣୁ ମସ୍‌ଜିଦର ମୀନାରରୁ ପ୍ରାର୍ଥନା ପାଇଁ ଡକରା ପଡ଼ିଯାଏ । ଉପବାସ ସମୟ ଏଇଠୁ ଆରମ୍ଭ ହୁଏ ଏବଂ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଆଉ କିଛି ଖାଇବା ବା ପିଇବା ସବୁ ନିଷେଧ । ପ୍ରାର୍ଥନା ପାଇଁ ଡକରା ଶୁଣି ପୁରୁଷ ଲୋକ ଓ ପୁରୁଷ ପିଲା ନିକଟବର୍ତ୍ତୀ ମସଜିଦ ଆଡ଼େ ବାହାରି ପଡ଼ନ୍ତି । ସ୍ତ୍ରୀଲୋକମାନେ ଘରେ ରହନ୍ତି । ସେମାନେ ସମସ୍ତେ ହାତ, ଗୋଡ଼, ମୁହଁ ଧୋଇ ପ୍ରାର୍ଥନା ପାଇଁ ଧାଡ଼ି କରନ୍ତି । ପବିତ୍ର କୋରାନର ଆବୃତ୍ତି ଶୁଣିବା ପାଇଁ କିଛି ସମୟ ଅପେକ୍ଷା କରିବା ପରେ, ସେମାନେ ତାଙ୍କର ସବୁଦିନିଆ ପ୍ରାର୍ଥନା ଗାଆନ୍ତି ।

ଏହାପରେ ସମସ୍ତେ ସାରା ଦିନଟିର କାମ ପାଇଁ ପ୍ରସ୍ତୁତ ହୋଇ-ଯାଆନ୍ତି । ସ୍ତ୍ରୀଲୋକମାନେ ଘର କାମରେ ଲାଗି ପଡ଼ନ୍ତି, ଅମଲାମାନେ ସେମାନଙ୍କର ଅଫିସକୁ ବାହାରି ଯାଆନ୍ତି । ଶ୍ରମିକମାନେ କାରଖାନାକୁ ଏବଂ ବ୍ୟବସାୟୀମାନେ ତାଙ୍କ ବେପାର ସ୍ଥଳକୁ ଚାଲି ଯାଆନ୍ତି । ସୁତରାଂ ରମ-ଜାନର ଉପବାସ ଲୋକମାନଙ୍କର ନିତିଦିନିଆ ଧନ୍ଦାରେ କୌଣସି ଅସୁବିଧା ସୃଷ୍ଟି କରେ ନାହିଁ । ଅନ୍ୟ ପକ୍ଷରେ ଲୋକମାନେ ବରଂ ଅଧିକ ଆଗ୍ରହର ସହ ନିଜ ନିଜର କାମରେ ଧ୍ୟାନ ଦିଅନ୍ତି ।

ଠିକ ସୂର୍ଯ୍ୟାସ୍ତ ବେଳକୁ ‘ମାଗ୍‌ରିବ’ ପ୍ରାର୍ଥନା ପାଇଁ ମସ୍‌ଜିଦ ଉପରୁ ଡକରାପଡ଼େ । ଉପବାସ ଭାଙ୍ଗିବା ପାଇଁ ଏହା ହେଉଛି ସଂକେତ । ଏହାକୁ ‘ଇଫତାରି’ ବୋଲି କୁହାଯାଏ । ଢୋକେ ପାଣି, କେତୋଟି ଖଜୁର କୋଳି ବା ଅନ୍ୟ କିଛି ଫଳ ଖାଇ ଉପବାସ ଭାଙ୍ଗିବା ବିଧି । କେତେକ ସ୍ତ୍ରୀ ଲୋକ ପାଟିରେ ଟିକିଏ ଲୁଣ ପକାଇ ଦିଅନ୍ତି । ତା’ପରେ ସେମାନେ ଇସଲାମୀ ନିୟମରେ ବାରଣ କରାଯାଇ ନ ଥିବା ଯେ କୌଣସି ଜିନିଷ ଖାଇ ପାରନ୍ତି ବା ପିଇ ପାରନ୍ତି ।

‘ଇଫତାରି’ ଖାଦ୍ୟ ତିଆରି କରିବା ପାଇଁ ଖୁବ୍ ହରକତ ହେବାକୁ ପଡ଼େ । ଖାଦ୍ୟ ଭିତରେ ତେନ୍ତୁଳି ପାଣିର ଖଟା, ଭଜା ଅଟା, ମଟର ଦାନା ବା ମସୁର ପିଝା, ମାଂସ କବାବ୍ ଓ ମିଠେଇ ଇତ୍ୟାଦି ପ୍ରଧାନ । ରମଜାନ ମାସରେ ପାଗ ଟିକିଏ ଗରମ ଥିଲେ, ନାନା ପ୍ରକାର ସରବତ ତିଆରି କରା-ଯାଏ ।

ଇଫତାରି ପରେ ସଂଧ୍ୟା ପ୍ରାର୍ଥନା ମାଗରିବ ଗାନ କରାଯାଏ । ତା’ ପରେ ରାତ୍ରି ଭୋଜନ ଏବଂ ରାତ୍ରି ଭୋଜନ ପରେ ରାତ୍ରି ପ୍ରାର୍ଥନା ‘ଇସା’ । ଏଇ ପ୍ରାର୍ଥନା ପରେ ପରେ ‘ତରାଭି’ ଗାନ କରାଯାଏ ।

ତା’ପରେ ଶୟନ । ଏମିତି ଭାବରେ ରମଜାନ ମାସର ୨୯ ବା ୩୦

ଦିନ କଟେ । ଯଦି ପ୍ରଥମ ଚନ୍ଦ୍ର, ମାସର ୨୯ ଦିନ ପରେ ଦୃଶ୍ୟ ହୁଏ, ତା' ହେଲେ ଗୋଟିଏ ଦିନ ଅଧିକ ଉପବାସ କରି ୩୦ ଦିନ ପୂର୍ଣ୍ଣ କରାଯାଏ । ପ୍ରଥମ ଚନ୍ଦ୍ର ଦୃଶ୍ୟ ହେବା ସାଙ୍ଗେ ସାଙ୍ଗେ ଇଦୁଲ—ଫିତର ଦିନ ପାଇଁ ଆନନ୍ଦର ଜୁଆର ସୃଷ୍ଟି ହୁଏ ଏବଂ ଏଇଠି ରମଜାନ ମାସ ଶେଷ ହୁଏ । ଦ୍ୱିତୀୟ ଦିନଟିକୁ ଖୁବ୍ ଉତ୍ସାହର ସହିତ ପାଳନ କରାଯାଏ । ସବୁ ମୁସଲମାନ ଲୋକ ଭଲ ଲୁଗାପଟା ପିନ୍ଧି ମସ୍‌ଜିଦରେ ଯାଇ ଏକାଠି ହୁଅନ୍ତି । 'ଇଦ୍‌ଗା'ରେ ବା କୌଣସି ଏକ ଖୋଲା ପଡ଼ିଆରେ ସେମାନେ ପ୍ରାର୍ଥନା କରିବାକୁ ଯାଇ ଧାଡ଼ି କରନ୍ତି । ସକାଳ ଏବଂ ମଧ୍ୟାହ୍ନ ପ୍ରାର୍ଥନାର ମଝାମଝି ସମୟରେ ଇଦ୍ ପ୍ରାର୍ଥନା ଆବୃତ୍ତି କରାଯାଏ । ପ୍ରାର୍ଥନା ସରିବା ପରେ ପରେ ପ୍ରତ୍ୟେକ ପ୍ରତ୍ୟେକକୁ ଆଲିଙ୍ଗନ କରି 'ଇଦ୍-ମୁବାରକ' ଜଣାନ୍ତି ।

'ଇଦୁଲ-ଫିତର' ପିଲାମାନଙ୍କର ଗୋଟିଏ ପ୍ରିୟ ଉତ୍ସବ । ପ୍ରଥମ ଚନ୍ଦ୍ର ଦୃଶ୍ୟ ହୋଇଥିବା କଥା ଶୁଣିବା ମାତ୍ରେ, ପରଦିନ ସକାଳ ପାଇଁ ସେମାନେ ଆଗେ ନିଜ ନିଜର ଜାମାପଟା ସଜାଡ଼ି ରଖନ୍ତି । ପୁଅମାନେ ସେମାନଙ୍କର ନୂଆ ଯୋତା ପାଇଁ ଏବଂ ଝିଅମାନେ ସେମାନଙ୍କର ମୁଣ୍ଡ-କଣ୍ଟା ପାଇଁ ଅପେକ୍ଷା କରି ରହିଥାଆନ୍ତି । ଇଦ୍ ପ୍ରାର୍ଥନାରେ ପୁଅମାନେ କେଉଁ ଟୋପି ପିନ୍ଧିବେ, ତାକୁ ସେମାନେ ଆଗରୁ ବାଛି କରି ରଖନ୍ତି । ଟିକି ଝିଅମାନେ ସେମାନଙ୍କର ପୋଷାକ ସହିତ ମେଳ ହେବା ଭଳି ଓଢଣାକୁ ରଙ୍ଗେଇ ଦେବା ନିମନ୍ତେ ବଡ ଭଉଣୀମାନଙ୍କ ପାଖରେ ଅଳି କରନ୍ତି । ଫଳରେ ପ୍ରତ୍ୟେକ ମୁସଲମାନ ପରିବାରଟି ହସ ଖୁସିରେ ଉଚ୍ଛୁଳି ଉଠେ ।

ପ୍ରଥମ ଚନ୍ଦ୍ର ଦର୍ଶନ ଦିନ ସଞ୍ଜଠାରୁ ତା' ପରଦିନ ସକାଳ ପର୍ଯ୍ୟନ୍ତ ମୁସଲମାନ ଦୋକାନଗୁଡ଼ିକ ସାରା ରାତି ଖୋଲା ରହେ । ଫଳରେ ଯାହାର ଯାହା ଦରକାର ସେ ସୁବିଧାରେ କିଣି ଇଦ୍ ପର୍ବଟିକୁ ଯଥାର୍ଥ ଭାବରେ ପାଳନ କରିବାକୁ ସମର୍ଥ ହୁଏ । ରାତିରେ ଯିଏ ଯେତେ ଡେରିରେ ଶୋଇ ପଡ଼ିବେ, ସେ ଖୁବ୍ ଭୋରରୁ ଉଠେ । ପିଲାମାନେ କିନ୍ତୁ ବଡମାନଙ୍କ ଅପେକ୍ଷା ଆହୁରି ବେଳାବେଳି ଉଠି ପଡନ୍ତି । ବୟସ୍କ ଲୋକମାନେ ଗାଧୁଆ ପାଧୁଆ ସାରିଲା ବେଳକୁ ପିଲାମାନେ ପ୍ରସ୍ତୁତ ହୋଇସାରି ଥାଆନ୍ତି ଏବଂ ବଡ-ମାନଙ୍କ ସହିତ ମସ୍‌ଜିଦ ବା ଇଦ୍‌ଗାକୁ ଯିବା ପାଇଁ ଅଥୟ ହୋଇ ପଡନ୍ତି । ପିଲାମାନେ ଖୁସିରେ ଡେଇଁବାର କାରଣ ହେଉଛି, ସେମାନେ 'ଇଦୀ' ବା କିଛି ପକେଟ ଖର୍ଚ୍ଚା ପାଇଥାଆନ୍ତି । ଏହାର ପରିମାଣ ସବୁଦିନିଆ ପକେଟ ଖର୍ଚ୍ଚାଠାରୁ ଟିକିଏ ବେଶି । ଘରକୁ ଫେରିବା ବାଟରେ ସେମାନେ ପଇସା-ତକ କଣ୍ଢେଇ, ବେଲୁନ ଓ ମିଠେଇ କିଣାରେ ଉଡେଇ ଦିଅନ୍ତି ।

ତା'ପରେ ସେମାନେ ଅଜା, ଆଈ, ଦାଦା, ଖୁଡୀ ଇତ୍ୟାଦିଙ୍କ ପାଖକୁ ଯାଆନ୍ତି । ସେମାନେ ମଧ୍ୟ କିଛି 'ଈଦୀ' ଓ ମିଠେଇ ଦିଅନ୍ତି । ଇଦ୍ ପାଇଁ ସ୍ୱତନ୍ତ୍ର ଭାବେ ରନ୍ଧାବଢ଼ା ହୁଏ । ସିମେଇ କ୍ଷୀରୀ ଏଇ ଦିନର ସବୁଠାରୁ ପ୍ରିୟ ଖାଦ୍ୟ । ଆଉ ମଧ୍ୟ କିସ୍‌ମିସ୍ ଓ ବାଦାମ ପକାଇ କ୍ଷୀରରେ 'ଶୀର-ଖୋରମା' ପ୍ରସ୍ତୁତ କରାଯାଏ । ଏଥି ସହିତ ଆହୁରି ଅନେକ ପ୍ରକାର ସୁସ୍ୱାଦୁ ଖାଦ୍ୟ ରନ୍ଧାବଢ଼ା ହୁଏ । ଅଧିକାଂଶ ଅଞ୍ଚଳରେ ଅନ୍ୟ ଧର୍ମର ଲୋକେ ମଧ୍ୟ ମୁସଲମାନମାନଙ୍କ ସହିତ ମିଶି ଇଦ ପାଳନ କରନ୍ତି ।

ଇଦୁଲ-ଫିତରର ପ୍ରାୟ ଦୁଇ ମାସ ନ' ଦିନ ପରେ ଇଦ-ଯୁହା ପଡ଼େ । ଏହି ଅବସରରେ କେହି କେହି ମୁସଲମାନ ମକ୍‌କାକୁ ତୀର୍ଥଯାତ୍ରାରେ ଯାଆନ୍ତି । ଏହି ତୀର୍ଥ ଯାତ୍ରାକୁ 'ହଜ୍' ବୋଲି କୁହାଯାଏ । ଇଦ-ଯୁହାରେ ମୁସଲମାନମାନେ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ଛେଳି ଓ ମେଣ୍ଢା ବଳି ଦିଅନ୍ତି । ମହାପୁରୁଷ ଆବ୍ରାହାମଙ୍କର ଭକ୍ତି ପରୀକ୍ଷା କରିବା ନିମନ୍ତେ ଭଗବାନ ଥରେ ତାଙ୍କୁ ତାଙ୍କର ପୁଅକୁ ବଳି ଦେବାକୁ କହିଥିଲେ । ନିଜ ଭକ୍ତିର ପରୀକ୍ଷା ଦେବା ପାଇଁ ସତକୁ ସତ ଆବ୍ରାହାମ ତାଙ୍କ ପୁଅ ଇସମାଇଲଙ୍କୁ ବଳି ଦେବାର ଯୋଗାଡ଼ କରିଥିଲେ । ଏଇଟି ହେଉଛି କେବଳ ତାହାରି ସ୍ମୃତି, କିନ୍ତୁ ଆବ୍ରାହାମ ଠିକ୍ ଯେତେବେଳେ ପୁଅକୁ ହାଣିବାକୁ ଯାଆନ୍ତି, ଭଗବାନ ସେତିକିବେଳେ ତାଙ୍କରି ଅଦ୍ଭୁତ ଶକ୍ତି ବଳରେ ଇସମାଇଲ ସ୍ଥାନରେ ଗୋଟିଏ ମେଣ୍ଢା ଛୁଆ ଆଣି ରଖିଦେଲେ । 'ଇଦ-ଯୁହା'ରେ ଏହି ମହାନ ତ୍ୟାଗ ଘଟଣାକୁ ପାଳନ କରାଯାଏ ।

ଇଦୁଲ-ଫିତର ପରି ଇଦୁଲ-ଯୁହାରେ ମଧ୍ୟ ସକାଳ ପ୍ରାର୍ଥନା ସାଙ୍ଗରେ କିଛି ଅଧିକ ଆବୃତ୍ତି କରାଯାଏ ଏବଂ ଲୋକମାନେ ପରସ୍ପରକୁ ଆଲିଙ୍ଗନ କରି ଶୁଭେଚ୍ଛା ଜଣାନ୍ତି । ତା' ପରେ ସେମାନେ ନିଜର ଶକ୍ତିକୁ ଦୃଷ୍ଟି ଯେ କୌଣସି ଗୋଟିଏ ଜୀବ ବଳି ପକାନ୍ତି । ବଳି-ପଶୁର ମାଂସ ଗରିବ ଲୋକ-ମାନଙ୍କ ମଧ୍ୟରେ ବାଣ୍ଟି ଦିଆଯାଏ । ଇଦୁଲ-ଯୁହା ସେଥିପାଇଁ ଇଦୁଲ-କୁର୍ବାନ ନାମରେ ପରିଚିତ । ଏହି ଇଦରେ ମଧ୍ୟ ପିଲମାନଙ୍କୁ 'ଈଦୀ' ଦିଆଯାଏ । କିନ୍ତୁ ସେମାନେ ଇଦୁଲ-ଫିତର ଭଳି ଏଥର ସେତେ ଖୁସି ଅନୁଭବ କରନ୍ତି ନାହିଁ ।

ଏ ସବୁ ବାଦ୍ ଆଉ ଗୋଟିଏ ଇଦ ଅଛି, ଯାହାକି 'ଇଦ-ଇ-ମିଲ୍ଲ-ହୁନ-ନବି' ନାମରେ ପରିଚିତ । ଏଇ ଦିନ ମହାପୁରୁଷ ମହମ୍ମଦଙ୍କର ପବିତ୍ର ଜନ୍ମ ଦିନ ପାଳନ କରାଯାଏ ।

ମୂଳ ଉର୍ଦ୍ଦୁ ଲେଖା : ଅନୱାର୍ କମଲ ହୁସେନ୍

# ଗଣେଶ ଚତୁର୍ଥୀ

'ଗଣପତି ବାପ୍ପା ମୋରୟା
ମଙ୍ଗଲ ମୂର୍ତ୍ତି ମୋରୟା. . .''
(ଗଣପତି ବାପା, ପୁଣି ଆସ ।
ମଙ୍ଗଳ ମୂର୍ତ୍ତି, ପୁଣି ଆସ । . . . )

ଏଇ ଧ୍ୱନିରେ ମହାରାଷ୍ଟ୍ରର ଗଗନ ପବନ ଭରିଯାଏ । ତା' ସାଙ୍ଗେ ସାଙ୍ଗେ ସାଙ୍ଗେ ଘଣ୍ଟା, ଝାଞ୍ଜ ଇତ୍ୟାଦି ବାଜୁଥାଏ । ଏହା ହେଉଛି ଗଣେଶ ଚତୁର୍ଥୀ ଏହାକୁ ବିନାୟକ ଚତୁର୍ଥୀ ବୋଲି ମଧ୍ୟ କୁହାଯାଏ ।

ଭାଦ୍ର ମାସ ଶୁକ୍ଳପକ୍ଷ ଚତୁର୍ଥୀ ଦିନ ଗଣେଶ ଚତୁର୍ଥୀ ପଡେ ଏବଂ ବର୍ଷାଋତୁ ସରିଗଲା ବୋଲି ଏହା ଜଣାଇ ଦିଏ । ଏହା ମୁଖ୍ୟତଃ ଗୋଟିଏ ମହାରାଷ୍ଟ୍ରୀୟ ପର୍ବ । ମହାରାଷ୍ଟ୍ରର ସବୁ ସ୍କୁଲ ଓ କଲେଜ ଏଥିପାଇଁ ବନ୍ଦ ରହେ । ଅନ୍ୟ ଛୁଟି ଦିନରେ ଲୋକମାନେ ଘରେ ରହି ବିଶ୍ରାମ ନିଅନ୍ତି; କିନ୍ତୁ ଏଇ ପର୍ବରେ ପ୍ରତ୍ୟେକ ଲୋକ ସେଦିନ ଖୁବ୍ ସକାଳୁ ଉଠି ପଡନ୍ତି । ପିଲାମାନେ ଗାଧୁଆ ପାଧୁଆ ସାରି ସେମାନଙ୍କର ନୂଆ ଲୁଗା ପିନ୍ଧନ୍ତି । ମାଆ-ମାନେ ଘରେ ଲଡୁ ତିଆରି କରନ୍ତି । ସାରା ପରିବାରଟିରେ ଗୋଟିଏ ଉତ୍ସ-ବର ବାତାବରଣ ଖେଳିଯାଏ ।

ଏହାପରେ ପିଲାମାନେ ବଡମାନଙ୍କ ସହିତ ବାହାରି ଯାଆନ୍ତି ଗଣେଶ ମୂର୍ତ୍ତି କିଣିବା ପାଇଁ । ବଜାରରେ ପ୍ରବଳ ଲୋକଗହଳି ଲାଗିଯାଏ । ପିଲାମାନେ ସେମାନଙ୍କର ବାପାମାନଙ୍କ ହାତକୁ ଟାଣି ଟାଣି ନେଇ ଭିଡ ଠେଲି ଆଗକୁ ମାଡି ଯାଆନ୍ତି । 'ଦେଖ ବାପା, ସେଠାରେ ଗୋଟିଏ ବଢ଼ିଆ ଗଣେଶ । ସେଇ ଗୋଟିକ ଆମେ ନେବା ।' ଅବଶ୍ୟ ଯେଉଁଟିରେ ସେମାନଙ୍କର ମନ ମାନିଥାଏ, ସେଇଟି ହେଉଛି ସବୁଠାରୁ ବଡ ମୂର୍ତ୍ତି । ଦୋକାନରେ ବିଭିନ୍ନ ଆକାରର ଶହ ଶହ ମୂର୍ତ୍ତି ରଖାଯାଇଥାଏ । ସବୁଗୁଡିକ ସୁନ୍ଦର ଭାବରେ ତିଆରି କରଯାଇଥାଏ ଏବଂ ସେଥିରେ ଶସ୍ତା ଧରଣର ମୋଟା ରଙ୍ଗ ଦିଆ ଯାଇଥାଏ । ଉଠା ଦୋକାନମାନଙ୍କରେ ସେଗୁଡିକ ସୁନ୍ଦର ଭାବେ ଧାଡିକରି ସଜାଇ ରଖାଯାଇଥାଏ । ଚିତ୍ରକରମାନେ ତିଆରି କରିଥିବା ମୂର୍ତ୍ତିଗୁଡିକ ଅନ୍ୟମାନଙ୍କ ତୁଳନାରେ ଅଧିକ ମୂଲ୍ୟ ହୁଏ । ବଡ ମୂର୍ତ୍ତି ନେବା ପାଇଁ ପିଲାମାନଙ୍କର ଲୋଭକୁ ଭୁଲାଭୁଲି କରି ଅଭିଭାବକମାନେ ଶେଷରେ ଗୋଟିଏ ଛୋଟ ମୂର୍ତ୍ତି ବାଛନ୍ତି ।

ଗଣେଶ ମୂର୍ତ୍ତିଟି କିଣା ସିବାପରେ ଗୋଟିଏ ଚିତ୍ରବିଚିତ୍ର ସୁନ୍ଦର କାଠପଟା ଉପରେ ସ୍ଥାପନ କରଯାଏ । ମୂର୍ତ୍ତିଟିକୁ ଘର ପର୍ଯ୍ୟନ୍ତ ବୋହି ନେବାରେ ପିଲମାନଙ୍କର ଭରୀ ଆଗ୍ରହ । କିନ୍ତୁ ଲୋକ ଗହଳି ଭିତରେ କାଳେ କାହା ଦେହରେ ବାଜି ତଳେ ପଡ଼ିଯିବ, ସେ ଦାୟୀତ୍ୱ କିଏ ନେବ ? ଭଙ୍ଗା ମୂର୍ତ୍ତି ଅଶୁଭ । ତେଣୁ ବୟସ୍କ ଲୋକମାନେ ହିଁ ନିଜେ ନିଜେ କାଠ ପଟାଟିକୁ ହାତରେ ଧରି ଚାଲନ୍ତି ଏବଂ ପିଲମାନେ ଝାଞ୍ଜ ବଜାଇ ଘଣ୍ଟା ପିଟି ବଡ ପାଟିରେ ଗାଆନ୍ତି, 'ଗଣପତି ବାପ୍ପା ମୋରୟା . . .' । ଏମିତି ଭାବରେ ଗଣେଶଙ୍କୁ ଶୋଭଯାତ୍ରରେ ଘର ପର୍ଯ୍ୟନ୍ତ ନିଆଯାଏ ।

ମହାରାଷ୍ଟ୍ରର ସବୁଆଡେ ସେଇ ଏକାକଥା । ଗଣେଶ ମୂର୍ତ୍ତି ଏଇ ତିଥିରେ ଘରେ ସ୍ଥାପନ କରି ପୂଜା କରଯାଏ । ଯଦିଓ ସେଗୁଡିକର ଆକାର ଭିନ୍ନ ଭିନ୍ନ, ତଥାପି ଗଠନ ପ୍ରଣାଳୀ ଏକାଭଳି । ସବୁଗୁଡିକରେ ମୂର୍ତ୍ତି ବସିଥାଆନ୍ତି । ଗଣେଶ ଠାକୁରଙ୍କ ଆଗରେ ଗୋଟିଏ ବଡ ଥାଳିରେ ଚାଉଳ ଅଟା, ଗୁଡ, ନଡିଆପାଡି, ଅଳେଇଚ ମଞ୍ଜି, କିସ୍‌ମିସ୍ ଏବଂ ବାଦାମ ଇତ୍ୟାଦି ପଡି ତିଆରି ହୋଇଥିବା 'ମୋଡାକ' ବା ଲଡୁ ରଖାଯାଇଥାଏ । ଅନ୍ୟାନ୍ୟ ହିନ୍ଦୁ ଦେବତାଙ୍କ ଭଳି ଗଣେଶଙ୍କର ମଧ୍ୟ ଗୋଟିଏ ବାହନ ଅଛି । ସେଇଟି ହେଉଛି ଗୋଟିଏ ମୂଷା । ଗଣେଶ ମୂର୍ତ୍ତିକୁ ଘରେ କେତେ ଦିନ ରଖାଯିବ ତାହା ପରିବାରର ପରମ୍ପରା ଉପରେ ନିର୍ଭର କରେ । କୌଣସି କୌଣସି ପରିବାରରେ ୩୬ ଘଣ୍ଟା ରଖାଯାଏ, ଆଉ କେତେକ ପରିବାରରେ ଖୁବ୍ ବେଶିରେ ଅନନ୍ତ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ, କେହି ପାଞ୍ଚଦିନ, କେହି ସାତଦିନ, କେହି ବା ନଅଦିନ ରଖନ୍ତି ।

ମୂର୍ତ୍ତିଟିକୁ ଘରକୁ ଅଣାଯିବା ପରେ ଗୋଟିଏ ସୁସଜ୍ଜିତ ସ୍ଥାନରେ ରଖାଯାଏ । ପିଲମାନେ ଗଣେଶଙ୍କୁ ରଙ୍ଗୀନ ପତାକା, ଝାଲର ଇତ୍ୟାଦିରେ ସଜାନ୍ତି, ଖାଲି ସେତିକି ନୁହେଁ, ତାଙ୍କ ସାଙ୍ଗମାନଙ୍କର ଗଣେଶ କେମିତି ସଜା ହୋଇଛନ୍ତି, ତାହା ଦେଖିବା ପାଇଁ ସକାଳେ ଘରକୁ ଘର ବୁଲି ଯାଆନ୍ତି ।

ଗଣେଶ ଦିଅଁ ଘରେ ଥିବା ପର୍ଯ୍ୟନ୍ତ ପ୍ରତିଦିନ ସକାଳେ ଓ ସଞ୍ଜରେ ତାଙ୍କ ପାଖରେ ପ୍ରାର୍ଥନା କରଯାଏ ଏବଂ ଆଳତି ଦିଆଯାଏ । କାହା କାହା ଘରେ ପୂଜାପାଠ ପାଇଁ ପୁରୋହିତଙ୍କୁ ଡକାଯାଏ ଏବଂ ଆଉ କାହା ଘରେ ସେମାନେ ନିଜେ ନିଜେ ଏ କାମ କରନ୍ତି । ଗଣେଶଙ୍କ ଉଦ୍ଦେଶ୍ୟରେ 'କେଓର୍' ନାମକ ଏକୋଇଶିଟି ଘାସ, ଗୋଟିଏ ପଦ୍ମ ଫୁଲ ଏବଂ ଭୋଗ ନିମନ୍ତେ ଏକୋଇଶିଟି ଲଡୁ ଅର୍ପଣ କରିବା ହେଉଛି ବିଧି । ଗଣେଶ ହେଉଛନ୍ତି ବିଦ୍ୟାଦାତା । ସେ ସବୁ ବିଘ୍ନ ଦୂରକରି ଆମ କାମକୁ ସଫଳ

କରନ୍ତି । ସେ ପୁଣି ହେଉଛନ୍ତି ଅନୁକୂଳ ଦେବତା ଏବଂ ସବୁ ବଡବଡ କାମ ଆରମ୍ଭରେ 'ଶ୍ରୀ ଗଣେଶାୟ ନମଃ' ବୋଲି କହି ପ୍ରଥମେ ତାଙ୍କର ବନ୍ଦନା କରାଯାଏ ।

ଗଣେଶ ଚତୁର୍ଥୀରେ ଗଣେଶ ମୂର୍ତ୍ତି ଘରେ ସ୍ଥାପନ କରାଯିବା ସଙ୍ଗେ ସଙ୍ଗେ ଅଧିକାଂଶ ସାହି ବସ୍ତିରେ, କୋଠରେ ମଧ୍ୟ ଏହା କରାଯାଏ । ସାଧାରଣତଃ ଏଇ ମୂର୍ତ୍ତିଗୁଡିକ ବହୁତ ବଡ । ବେଳେବେଳେ ଏହା ୨୦ ଫୁଟ ପର୍ଯ୍ୟନ୍ତ ଉଚ୍ଚ ହୁଏ । ଏଗୁଡିକର ଆକାର ପ୍ରକାର ମଧ୍ୟ ଭିନ୍ନ ଭିନ୍ନ । ରାମାୟଣ, ମହାଭାରତ ଏବଂ ଅନ୍ୟାନ୍ୟ ପୁରାଣମାନଙ୍କରେ ତାଙ୍କ ବିଷୟରେ ଯେଉଁ ଭିନ୍ନ ଭିନ୍ନ କାହାଣୀ ସବୁ ବର୍ଣ୍ଣନା କରାଯାଇଛି, ସେଇ ଅନୁସାରେ ମୂର୍ତ୍ତି ତିଆରି କରାଯାଇଥାଏ । ତାଙ୍କୁ ଶ୍ରୀକୃଷ୍ଣ ଭାବରେ ମଧ୍ୟ ଚିତ୍ରଣ କରାଯାଇ ପାରେ, ଯେ କି କାଳୀୟ ନାଗର ମୁଣ୍ଡ ଉପରେ ଠିଆ ହୋଇଥିବେ ଅଥବା କୌଣସି ରାକ୍ଷସକୁ ବଧ କରୁଥିବେ । ହିନ୍ଦୁ ମନ୍ଦିରର ସବୁ ଠାକୁର ଠାକୁରାଣୀଙ୍କଠାରେ ଗଣେଶଙ୍କର ଦୟାମୟ ଓ ମଙ୍ଗଳମୟ ଭାବଟି ନିହିତ ବୋଲି ବିଶ୍ୱାସ କରାଯାଏ । ଯଦିଓ ପ୍ରତିବର୍ଷ ପାରମ୍ପରିକ ଢଙ୍ଗରେ ଶହ ଶହ ଗଣେଶ ମୂର୍ତ୍ତି ତିଆରି କରାଯାଏ, ତଥାପି ଅତ୍ୟାଧୁନିକ ଘଟଣାକୁ ଚିତ୍ରଣ କରିବାକୁ ନୂଆ ନୂଆ କୌଶଳମାନ ଆବିଷ୍କାର କରାଯାଉଛି । ହିମାଳୟ ଉପରେ ତେନଜିଙ୍କୁ ଗଣେଶ ଆଶୀର୍ବାଦ କରୁଥିବାର ଗୋଟିଏ ମୂର୍ତ୍ତି କିଛିଦିନ ତଳେ ଖୁବ୍ ଲୋକପ୍ରିୟ ହୋଇଥିଲା ।

ଗଣେଶ ପୂଜା ଭଳି ଗୋଟିଏ ସାଧାରଣ ପର୍ବକୁ ଯିଏ ଜାତୀୟ ପର୍ବରେ ପରିଣତ କରିଥିଲେ, ସେ ହେଉଛନ୍ତି ଲୋକମାନ୍ୟ ବାଳ ଗଙ୍ଗାଧର ତିଳକ । ସେତେବେଳେ ଇଂରେଜମାନେ ଭାରତ ଶାସନ କରୁଥିଲେ । ଭାରତର ଲୋକମାନଙ୍କର ମନର ବଳ ଭାଙ୍ଗି ପଡିଥିଲା । ସେମାନେ ନିଜ ଉପରୁ ବିଶ୍ୱାସ ହରାଇ ବସିଥିଲେ । ଲୋକମାନଙ୍କ ମନରେ ପୁଣି ନୂତନ ବିଶ୍ୱାସ ଆଣିଦେବା ପାଇଁ ତିଳକ ଏଇ ଉତ୍ସବକୁ ନୂଆ ରୂପ ଦେଇଥିଲେ । ସେ ବିଶ୍ୱାସ କରୁଥିଲେ ଯେ, ଲୋକମାନେ ଏଇ ଉତ୍ସବକୁ ପାଳିବା ପାଇଁ ଏକାଠି ହେଲାବେଳେ ନିଜ ନିଜ ଭିତରେ ଥିବା ଭେଦଭାବକୁ ଭୁଲି ଯାଆନ୍ତି ଏବଂ ବନ୍ଧୁ ଭାବରେ ଏକମନ ହୋଇଯାଆନ୍ତି ।

ତିଳକ କଳା ସଂସ୍କୃତିକୁ ମଧ୍ୟ ଉତ୍ସାହିତ କରିଥିଲେ । ସେ ସାଂସ୍କୃତିକ କାର୍ଯ୍ୟକ୍ରମଗୁଡିକର ପୃଷ୍ଠପୋଷକ ଥିଲେ । ଏହି କାର୍ଯ୍ୟକ୍ରମକୁ ଜଣାଶୁଣା ସଙ୍ଗୀତଜ୍ଞମାନଙ୍କୁ ନିମନ୍ତ୍ରଣ କରାଯାଉଥିଲା । ନାମଜାଦା କବିମାନେ ସେମାନଙ୍କର କବିତା ଆବୃତ୍ତି କରୁଥିଲେ ଏବଂ ନୂଆ ପୁରୁଣା ନାଟକମାନ

ଅଭିନୟ କରଯାଉଥିଲା । ଭିନ୍ନ ଭିନ୍ନ ବିଷୟରେ ଆଲୋଚନା କରଯାଉଥିଲା ଏବଂ ଏହି ସଙ୍ଗରେ ସମାଜସେବୀ ଓ ରାଜନୀତିଜ୍ଞମାନେ ଭାଷଣ ଦେଉଥିଲେ । ସେଠାରେ ସମୂହ କୀର୍ତ୍ତନ, ଭଜନ ଓ କୀର୍ତ୍ତନ କରଯାଉଥିଲା । ଏହା ପରେ ପରେ ଧର୍ମ ବିଷୟରେ ଆଲୋଚନା ହେଉଥିଲା ।

ଦଳ ଦଳ ପିଲା ନାଚ ଗୀତ ପରିବେଷଣ କରୁଥିଲେ ଏବଂ ଏଥିରେ ସେମାନଙ୍କର ନିଜର କିଛି ବିଶେଷତ୍ୱ ଥିଲା । ସବୁ ମଧ୍ୟରେ ବିଶେଷ ଲୋକପ୍ରିୟ ଥିଲା ପିଲାମାନଙ୍କ ଦ୍ୱାରା ଶିବାଜୀଙ୍କ ସୈନ୍ୟସଜ୍ଜା କାର୍ଯ୍ୟକ୍ରମ । ସଞ୍ଜବେଳେ ପିଲାମାନେ ଏକା ପ୍ରକାର ପୋଷାକ ପିନ୍ଧି, ଜାତୀୟ ସଙ୍ଗୀତ ଗାଇ ଗାଇ, ଘଣ୍ଟି ବନ୍ଧା ହୋଇଥିବା ଗୋଟିଏ କାଠିରେ ତାଳ ଦେଇ ଦେଇ ସହର ପରିକ୍ରମା କରନ୍ତି । ଗଣେଶଙ୍କ ଆଗରେ ଏଇ ଖେଳ ଦେଖାଇବା ପାଇଁ ସେମାନଙ୍କୁ ଡକାଯାଏ । ଏହି ଦୃଶ୍ୟ ବହୁ ଲୋକ ସେଠାରେ ରୁଣ୍ଡ ହୋଇ ଦେଖନ୍ତି । ଏଇଭଳି ଭାବରେ ଗଣେଶ ଚତୁର୍ଥୀ ଯୁବକମାନଙ୍କ ମନରେ ଗୋଟିଏ ସାଂସ୍କୃତିକ ଚେତନା ଆଣି ଦେଇଥିଲା ।

ଯଦିଓ ଗଣେଶ ପୂଜାକୁ ଗୋଟିଏ ସାର୍ବଜନୀନ ପର୍ବରେ ପରିଣତ କରିବା ଦିଗରେ ତିଳକ ଦାୟୀ, ତଥାପି ଗଣେଶ ପୂଜା କେଉଁ ପୁରୁଣା କାଳରୁ ଚଳି ଆସୁଛି । ଗଣେଶ ହେଉଛନ୍ତି ଶୈବ ଧର୍ମାବଲମ୍ବୀମାନଙ୍କର ଗୋଟିଏ ବିଶିଷ୍ଟ ଦେବତା ଏବଂ ଗଣେଶଙ୍କର ମନୁଷ୍ୟ ଦେହରେ ହାତୀର ମୁଣ୍ଡ କଥା ବେଶ୍ ଜଣାଶୁଣା । ଗଣେଶଙ୍କର ଏଭଳି ରୂପ କାହିଁକି ହେଲା, ସେ ସମ୍ପର୍କରେ ଶିବ ପୁରାଣରେ ଗୋଟିଏ କାହାଣୀ ବର୍ଣ୍ଣନା କରଯାଇଛି ।

ଥରେ ଶିବ ଠାକୁରଙ୍କ ସ୍ତ୍ରୀ ପାର୍ବତୀ ଗାଧୋଉଥିବା ବେଳେ ଗାଧୁଆଘର ଦ୍ୱାର ଜଗିବା ପାଇଁ ଜଣେ ଜଗୁଆଳ ଦରକାର ହେଲା । କିନ୍ତୁ କେହି ମିଳିଲେ ନାହିଁ । ତେଣୁ ପାର୍ବତୀ ଫୁଲାଏ କାଦୁଅରେ ଗୋଟିଏ ମନୁଷ୍ୟ ମୂର୍ତ୍ତି ଗଢ଼ି, ସେଥିରେ ଜୀବନ ଦେଇ, ତାକୁ ଗାଧୁଆ ଘରର ବାହାରପଟ ଦୁଆର ମୁହଁରେ ନେଇ ଜଗାଇ ଦେଲେ । ସେହି ଜୀବନ୍ତ ପ୍ରତିମାଟିକୁ ଆଦେଶ ଦେଲେ ଯେ, ସେ କାହାରିକୁ ହେଲେ ଭିତରକୁ ଛାଡ଼ିବ ନାହିଁ । କିଛି ସମୟ ପରେ ନିଜେ ଶିବ ଠାକୁର ସେଠାରେ ଆସି ଉପସ୍ଥିତ ହେଲେ; କିନ୍ତୁ ଜଗୁଆଳ ତାଙ୍କୁ ଭିତରକୁ ଛାଡ଼ିଦେଲା ନାହିଁ । ଶିବ ଏଥିରେ ରାଗିଯାଇ ଜଗୁଆଳର ମୁଣ୍ଡ କାଟି ଦେଲେ । ପାର୍ବତୀ ଯେତେବେଳେ ଏକଥା ଦେଖିଲେ, ଭାରି ସେ ବ୍ୟସ୍ତ ହୋଇ ପଡ଼ିଲେ । ସ୍ତ୍ରୀଙ୍କର ବ୍ୟସ୍ତତା ଦୂର କରିବା ପାଇଁ ଶିବ, ଇନ୍ଦ୍ରଙ୍କ ହାତୀର ମୁଣ୍ଡ କାଟି, ସେଇ ମୁଣ୍ଡକୁ ନେଇ ଦ୍ୱାରପାଳର ଦେହରେ ଖଞ୍ଜିଦେଲେ । ତାଙ୍କର ନାମ ହେଲା ଗଣେଶ ।

ଗଣପତି ହେଉଛନ୍ତି ବିଦ୍ୟା-ଦେବତା ଏବଂ ସେ ବିଘ୍ନରାଜ । ସେଇ-ଦିନ ଠାରୁ କୌଣସି ନୂଆ କାମର ଅନୁକୂଳ ସମୟରେ ତାଙ୍କ ନାମ ଉଚ୍ଚାରଣ କରାଯାଏ । ଏ ବିଷୟରେ ଗୋଟିଏ କିମ୍ବଦନ୍ତୀ ଅଛି ।

ଥରେ ସ୍ୱର୍ଗର ଦେବତାମାନେ କୈଳାସ ପର୍ବତରେ ଶିବ ପାର୍ବତୀଙ୍କୁ ଭେଟିବାକୁ ଆସିଥିଲେ । ସେମାନେ ତାଙ୍କୁ ଗୋଟିଏ ଅମୃତ ଲଡ଼ୁ ଉପହାର ଦେଇଥିଲେ । ସେଠାରେ ଖେଳୁଥିବା ତାଙ୍କର ଦୁଇ ପୁଅ ଗଣେଶ ଏବଂ କାର୍ତ୍ତିକେୟ ସେଇ ଲଡ଼ୁଟି ନେବା ପାଇଁ ଜିଦ କଲେ । ଗୋଟିଏ ମାତ୍ର ଲଡ଼ୁ ଥିବାରୁ ପାର୍ବତୀ ପ୍ରସ୍ତାବ ଦେଲେ, 'ଦୁହିଁଙ୍କ ମଧ୍ୟରୁ ଯିଏ ସବୁଠୁ ଆଗେ ପୃଥିବୀକୁ ବୁଲି ଆସିବ, ସେଇ ଏକା ଲଡ଼ୁଟି ପାଇବ । କାର୍ତ୍ତିକେୟ ସାଙ୍ଗେ ସାଙ୍ଗେ ତାଙ୍କର ବାହନ ମୟୂର ଉପରେ ବସି ପୃଥିବୀ ବୁଲିବାକୁ ବାହାରି ପଡ଼ିଲେ । ଗଣେଶ କିନ୍ତୁ ଯେଉଁଠି ଥିଲେ ସେଇଠି ରହିଲେ । କିଛି ସମୟ ପରେ ସେ ତାଙ୍କ ପିତାମାତାଙ୍କ ଚାରିପଟରେ ଥରେ ବୁଲି ଆସିଲେ, ଏବଂ ତାଙ୍କ ପାଦ ଛୁଇଁଲେ । କାର୍ତ୍ତିକେୟ ଯେତେବେଳେ ଫେରି ଆସିଲେ, ସେ ଧରିନେଲେ ଯେ, ସେ ହିଁ କେବଳ ଏଇ ପ୍ରତିଯୋଗିତାରେ ଜିତିଛନ୍ତି । କିନ୍ତୁ ପାର୍ବତୀ କହିଲେ, 'ପିତାମାତା ହେଉଛନ୍ତି ସମଗ୍ର ପୃଥିବୀ ଠାରୁ ବଡ଼ । ଗଣେଶ ଏଇକଥା ବୁଝିଛନ୍ତି । ତେଣୁ ଗଣେଶ ହିଁ ଲଡ଼ୁଟି ପାଇବେ ।' ଗଣେଶଙ୍କର ଏଇ ଆଚରଣରେ ଶିବ ମଧ୍ୟ ଖୁସି ହୋଇ ଯାଇଥିଲେ । ସେ ତାଙ୍କୁ ଆଶୀର୍ବାଦ କରି କହିଲେ, 'ଏଣିକି ଲୋକ ଯେ କୌଣସି କାର୍ଯ୍ୟ ଆରମ୍ଭ କଲା ପୂର୍ବରୁ ପ୍ରଥମେ ତୁମକୁ ହିଁ ପୂଜା କରିବେ ।'

ଗଣେଶ ଚତୁର୍ଥୀ ଦିନ ଲୋକେ ଚନ୍ଦ୍ର ଦର୍ଶନ କରନ୍ତି ନାହିଁ । କାରଣ ଚନ୍ଦ୍ର ଦେଖିଲେ ସେମାନେ କୁଆଡ଼େ ଚୋର ହେବେ । ମନୁଷ୍ୟର ପ୍ରକୃତି ହେଉଛି, ବିଶେଷ କରି ପିଲାମାନଙ୍କର ଯେ, ଯେଉଁ କାମକୁ ବାରଣ କରାଯାଇଥିବ ସେଇ କାମ କରିବାକ ସେମାନେ ବେଶି ବେଶି ଆଗ୍ରହୀ ହେବେ । ତେଣୁ ବେଳେ ବେଳେ ସେମାନେ ଚନ୍ଦ୍ର ଦେଖି ଦିଅନ୍ତି ଏବଂ ଏହାର ଫଳାଫଳ କଥା ଭବି ବ୍ୟସ୍ତ ହୋଇ ପଡ଼ନ୍ତି । ଏକଥାଟି ପଛରେ ମଧ୍ୟ ଗୋଟିଏ ପୌରାଣିକ କିମ୍ବଦନ୍ତୀ ଅଛି । ଥରେ କୁଆଡ଼େ ଗଣେଶ ତାଙ୍କ ମୂଷା ବାହାନରେ ବସି ଯାଉଥିଲେ । ମୂଷାଟି ତାଙ୍କର ଭାର ସମ୍ଭାଳି ନ ପାରିବାରୁ ଗଣେଶ ତଳେ ପଡ଼ିଗଲେ । ଜହ୍ନ ଏ କଥା ଦେଖି ହସି ପକାଇଲେ । ଫଳରେ ଗଣେଶ ରାଗିଗଲେ ଏବଂ ଚନ୍ଦ୍ରଙ୍କୁ ଅଭିଶାପ ଦେଇ କହିଲେ, 'ଆଜିଠାରୁ ତୋ ମୁହଁ କେହି ଚାହିଁବେ ନାହିଁ । କେହି ଯଦି ଚାହିଁବାକୁ ଚେଷ୍ଟା କରେ, ତେବେ ସେ ଚୋର ବୋଲି ଗଣାହେବ ।' ଲୋକେ





କହନ୍ତି ଯେ, ଶ୍ରୀକୃଷ୍ଣ ସ୍ୟମନ୍ତକ ମଣି ଚୋରି କରିଛନ୍ତି ବୋଲି ଯେଉଁଦିନ ତାଙ୍କୁ ଦାୟୀ କରାଗଲା । ସେଦିନ ସେ କୁଆଡେ଼ ଚନ୍ଦ୍ରଙ୍କୁ ଚାହିଁଥିଲେ ।

କେତେକ ପରିବାରରେ ଏଇ ଦଶଦିନିଆ ଗଣେଶ ପୂଜା ସମୟରେ ଗୌରୀ ପୂଜା ମଧ୍ୟ କରାଯାଏ । ଘରେଇ ଚାକରମାନେ 'ରାମ' ଓ 'ବାଲୁ' ନାମରେ ଘରକୁ ଘର ନାଚି ନାଚି ଯାଆନ୍ତି । ଏଇ ବିଧି ଜନ୍ମାଷ୍ଟମୀ ଠାରୁ ଆରମ୍ଭ ହୋଇ ଗଣେଶଙ୍କର ବିସର୍ଜନ ଦିବସ ଅନନ୍ତ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ଚାଲେ । ଜନ୍ମାଷ୍ଟମୀ ଉତ୍ସବରେ ଅଂଶ ଗ୍ରହଣ କରି ସେମାନେ କିଛି ଦିନ ବିଶ୍ରାମ ନିଅନ୍ତି ଏବଂ ତା'ପରେ ଗଣେଶ ଉତ୍ସବ ପାଇଁ ଅଭ୍ୟାସ ଆରମ୍ଭ କରନ୍ତି ।

ଦିନର କାମଦାମ ସାରି ଏଇ 'ରାମ'ମାନେ ଘର ବା ଦୋକାନ ବାହାରେ କୌଣସି ଗୋଟିଏ ଖୋଲା ଜାଗାରେ ଏକାଠି ହୋଇ ତାଙ୍କର ଆବୃତ୍ତି ଓ ଅଭ୍ୟାସ କରନ୍ତି । ସାଧାରଣତଃ ବାର ଚଉଦ ଜଣରେ ଗୋଟିଏ ଲେଖା ଦଳ ଗଠିତ । ଆଠ ନଅ ଜଣ ନାଚନ୍ତି, ଅନ୍ୟମାନେ ଗାଆନ୍ତି । ଅଣ୍ଟାରେ ଘଣ୍ଟି ବାନ୍ଧି, ଗୀତ ଓ ବାଜାର ତାଳେ ତାଳେ ଦୋହଲି ଦୋହଲି ଘୂରି ଘୂରି ସେମାନେ ନାଚନ୍ତି । ପ୍ରଥମେ ଗଣେଶଙ୍କ ନାମରେ ମଙ୍ଗଳାଚରଣ କରି ନାଚ ଆରମ୍ଭ କରାଯାଏ । ମହାରାଷ୍ଟ୍ରର କଙ୍କଣ ଜିଲ୍ଲାରେ ସାଧାରଣତଃ ଏଇ ରାମମାନେ ନାଚନ୍ତି ।

ଏଇ ନାଚଦଳ ସେମାନଙ୍କର ଦରକାରୀ ବାଦ୍ୟଯନ୍ତ୍ର କିଣିବା ପାଇଁ ପଇସା ସଂଗ୍ରହ କରନ୍ତି । ତାଙ୍କ ଅଞ୍ଚଳର ଗଣେଶଙ୍କ ଆଗରେ ସେମାନେ ନାଚଗୀତ କରନ୍ତି ଏବଂ ଦୁଆରେ ଦୁଆରେ ବୁଲି ନାଚି ନାଚି ପଇସା ମାଗନ୍ତି ।

ଗଣେଶ ପୂଜା ଗାଁଗଣ୍ଡା ସହର ବଜାର ସବୁଆଡ଼େ ପାଳନ କରାଯାଏ । ପ୍ରବାସୀ ଲୋକମାନେ ଏହି ଉପଲକ୍ଷେ ନିଜ ନିଜ ଘରକୁ ଫେରି ଆସିବାକୁ ଚେଷ୍ଟା କରନ୍ତି । ଉପହାର ଦିଆନିଆ ଗୋଟିଏ ବିଧି ହୋଇଥିବାରୁ ହାଟବଜାରରେ ଯେମିତି ଭିଡ଼ ରେଳ, ମଟର ଓ ଷ୍ଟିମର ଇତ୍ୟାଦିରେ ମଧ୍ୟ ସେମିତି ଭିଡ଼ ହୁଏ । ସହର ବଜାରରେ ଯେମିତି ଆଡ଼ମ୍ବର ସହକାରେ ଏହି ପର୍ବ ପାଳନ କରାଯାଏ, ଗାଁ ଗହଳିରେ ଅବଶ୍ୟ ସେଭଳି ହୁଏ ନାହିଁ । ମଫସଲରେ କେବଳ ଗାଁ ସ୍କୁଲରେ ବା ମୁଖିଆଙ୍କ ଘରେ ଗଣେଶ ମୂର୍ତ୍ତି ସ୍ଥାପନ କରାଯାଏ । ଏଇଠାରେ ଗ୍ରାମବାସୀମାନେ ଆସି କାର୍ଯ୍ୟକ୍ରମ ଦେଖନ୍ତି ।

ସହରମାନଙ୍କରେ ଦଶଦିନିଆ ଗଣେଶୋତ୍ସବ ରହୁଁ ରହୁଁ କେତେ-

ଆହେ ସରିଯାଏ । ପ୍ରତିଦିନ ସାଜସଜ୍ଜା ବଦଳେ ଏବଂ ନୂଆ ନୂଆ କାର୍ଯ୍ୟକ୍ରମ ପରିବେଷଣ କରାଯାଏ । କି ଧନୀ, କି ଗରିବ ପିଲାଠୁ ବୁଢ଼ା ପର୍ଯ୍ୟନ୍ତ ସବୁ ସଂପ୍ରଦାୟର ଲୋକ ଗଣେଶ ଦେଖିବାକୁ ଆସନ୍ତି । ସମଗ୍ର ସହରଟି ଗୋଟିଏ ଆନନ୍ଦ ମେଳା ଭଳି ଦେଖାଯାଏ ।

ସମସ୍ତଙ୍କ ଶେଷରେ ଆସେ ଅନନ୍ତ ଚତୁର୍ଦ୍ଦଶୀ । ବିସର୍ଜନ ପର୍ବପାଇଁ ବ୍ୟାପକ ଆୟୋଜନ କରାଯାଏ । କେତେକ ଲୋକ ସେମାନଙ୍କର ବନ୍ଧୁବାନ୍ଧବଙ୍କ ଗହଣରେ ନିଜେ ନିଜେ ବିସର୍ଜନ କରିବାକୁ ପସନ୍ଦ କରନ୍ତି । ଆଉ କେହି କେହି ସେମାନଙ୍କର ମୂର୍ତ୍ତିଗୁଡ଼ିକୁ ନେଇ ସର୍ବସାଧାରଣ ସ୍ଥାନରେ ଯେଉଁ ବଡ଼ ବଡ଼ ମୂର୍ତ୍ତିମାନ ପ୍ରତିଷ୍ଠା କରାଯାଇଥାଏ, ତାଆରି ପାଖରେ ରଖି ଦିଅନ୍ତି । ଏଗୁଡ଼ିକ ପରେ ସୁସଜ୍ଜିତ ବଳଦଗାଡ଼ି ବା ଟ୍ରକରେ ଲଦିକରି ନିଆଯାଏ । ପିଲାମାନେ ମୂର୍ତ୍ତିଗୁଡ଼ିକ ଉପରେ ହାତ ପକାଇ ପଛରେ ଏକ ପ୍ରକାର ଆଉଜି କରି ଠିଆହୋଇ ଥାଆନ୍ତି । ଘଣ୍ଟା ପିଟି, ଝାଞ୍ଜ ବଜାଇ, 'ଗଣପତି ବାପ୍ପା ମୋରୟା' ବୋଲି ଗାଇ ଗାଇ ଶୋଭାଯାତ୍ରାକାରୀମାନେ ବିଭିନ୍ନ ରାସ୍ତାରେ ବୁଲନ୍ତି ।

ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ସବୁ ଟ୍ରକ ଓ ଶଗଡ ଆସି ଏକାଠି ହୋଇ ଗୋଟିଏ ବଡ଼ ଶୋଭାଯାତ୍ରା କରନ୍ତି । କେଉଁ ମେଢ଼ଟି ସମସ୍ତଙ୍କ ଆଗରେ ଯିବ, ସେଥିପାଇଁ ସହର ଓ ମଫସଲରେ ଭିନ୍ନ ଭିନ୍ନ ବିଚାର ଥାଏ । ସାଧାରଣତଃ ସବୁଠାରୁ ପୁରୁଣା ମନ୍ଦିରର ମୂର୍ତ୍ତିକୁ ଏଇ ସମ୍ମାନ ଦିଆଯାଏ । ଏଇ ମୂର୍ତ୍ତିକୁ ଗୋଟିଏ ମେଢ଼ରେ ଥୋଇ ତାକୁ କାନ୍ଧରେ ରଖି ନିଆଯାଏ । ଶୋଭାଯାତ୍ରା ସହିତ ଗୀତବୋଲା ଓ ବାଜାବାଲା ମଧ୍ୟ ଯାଆନ୍ତି । ସେମାନେ ମଙ୍ଗଳଗୀତ ଗାଇ ଗାଇ ଯାଉଥିବା ବେଳେ ରାସ୍ତାର ଦୁଇ କଡ଼ରେ ଲୋକମାନେ ଠିଆ ହୋଇ ଏଇ ଦୃଶ୍ୟ ଉପଭୋଗ କରନ୍ତି ଏବଂ ଅବିରଗୁଣ୍ଡ ଛାଟନ୍ତି ।

ଗତ କେତେ ବର୍ଷ ହେଲା ସାର୍ବଜନୀନ ଗଣେଶ ମେଢ଼ର ସଂଖ୍ୟା ବହୁତ ବଢ଼ିଛି ଏବଂ ଆଜିକାଲି ସହର ମଧ୍ୟରେ ଶୋଭାଯାତ୍ରାଟିଏ ଅତିକ୍ରମ କରି ଯିବାକୁ ବହୁତ ସମୟ ଲାଗି ଯାଉଛି । ୧୯୭୮ ମସିହାରେ ପୁନେ ଠାରେ ଗୋଟିଏ ଶୋଭାଯାତ୍ରା ସହର ଅତିକ୍ରମ କରିବାକୁ ପ୍ରାୟ ୩୦ର ଘଣ୍ଟା ସମୟ ନେଇଥିଲା । ଏହାକୁ ଦେଖିବା ପାଇଁ ହଜାର ହଜାର ଲୋକ ରୁଣ୍ଡ ହୋଇଥିଲେ । ସେତେବେଳେ ଇଞ୍ଚେ ହେଲେ ଜାଗା କେଉଁଠି ଛାଡ଼ ଯାଇ ନ ଥିଲା ।

ଶୋଭାଯାତ୍ରା ଯାଇ ନଦୀ, ହ୍ରଦ ବା ସମୁଦ୍ର କୂଳରେ ପହଞ୍ଚିବା

ସଙ୍ଗେ ସଙ୍ଗେ ଉଚ୍ଚ ସ୍ୱରରେ ଶୁଣାଯାଏ—

'ଗଣପତି ବାପ୍ପା ମୋରୟା,
ପରଚ୍ୟା ବର୍ଷି ଲୌକର ୟା ...।'

'ଆସନ୍ତା ବର୍ଷ ସଅଳ ଆସ' ବୋଲି କହି ଲୋକମାନେ ମୂର୍ତ୍ତି ଗୁଡ଼ିକୁ ପାଣିକୁ ଫିଙ୍ଗି ଦିଅନ୍ତି । ତା'ପରେ ସାମାନ୍ୟ ଜଳଯୋଗ ପରେ ଲୋକମାନେ ନିଜ ନିଜର ଘରକୁ ଫେରି ଯାଆନ୍ତି ।

ଗଣେଶ ପୂଜା ଭାରତର ଆଉ କେତେକ ଅଞ୍ଚଳରେ ମଧ୍ୟ ପାଳନ କରାଯାଏ । କେବଳ ମହାରାଷ୍ଟ୍ରରେ ଏହା ସାର୍ବଜନୀନ ଭାବେ ଓ ଖୁବ୍ ଜାକଜମକରେ ପାଳନ କରାଯାଏ । ମରାଠୀମାନେ ବାହାରେ ଯେଉଁଠି ଥାଆନ୍ତୁ ନା କାହିଁକି, ସେମାନେ ଏକାଠି ହୋଇ, ନିଜ ରାଜ୍ୟରେ ଥିଲେ ଯେମିତି କରନ୍ତେ, ଠିକ୍ ସେମିତି ଆଗ୍ରହ ଉତ୍ସାହର ସହିତ ଏହାକୁ ପାଳନ କରନ୍ତି ।

ମୂଳ ମରାଠୀ ଲେଖା : ସବିତା ଯାଯୋଡ଼ିଆ

# ଦୁର୍ଗା ପୂଜା

ଦିନ ଯେତେବେଳେ କ୍ରମେ ଛୋଟ ହେବାକୁ ଲାଗେ, ଏବଂ ବନ୍ୟା ମହାମାରିର ଭୟ ଆଉ ନ ଥାଏ, ଠିକ୍ ଏତିକିବେଳେ ନୀଳ ଆକାଶରେ ଧଳାଧଳା ମେଘମାଳ ଭସି ବୁଲନ୍ତି । ଦକ୍ଷିଣା ପବନ ଅଧିକ ଶୀତଳ ଓ ଶୁଷ୍କ ହୋଇ ପଶ୍ଚିମାଭିମୁଖୀ ହୁଏ । ବିନ୍ଦୁ ବିନ୍ଦୁ ଶିଶିର ଝରିପଡେ । ଧାନଗଛ ସବୁ ଜଙ୍ଘେ ଉଚ୍ଚରେ ବଢିଥାଏ । ପୃଥିବୀ ସୁଖର ସମ୍ଭାବନାରେ ପରିପୂର୍ଣ୍ଣ । ଏହା ହିଁ ହେଉଛି ଶରତ ଋତୁ ।

ଦୁଷ୍ଟ ଉପରେ ଶିଷ୍ଟର ବିଜୟ ଉପଲକ୍ଷେ ଏହି ଅବସରରେ ଦୁର୍ଗାପୂଜା ପାଳନ କରାଯାଏ । ବଙ୍ଗବାସୀମାନଙ୍କର ଏହା ହେଉଛି ଗୋଟିଏ ପ୍ରଧାନ ପର୍ବ । ବଙ୍ଗୀୟମାନେ କେବଳ ନିଜ ରାଜ୍ୟରେ ନୁହେଁ, ପୃଥିବୀର ଯେ କୌଣସି ସ୍ଥାନରେ ଥାଆନ୍ତୁ ନା କାହିଁକି, ସେମାନେ ଏହି ପର୍ବ ପାଳନ କରିବାକୁ ଛାଡନ୍ତି ନାହିଁ ।

ସାଧାରଣତଃ ଆଶ୍ୱୀନ ଶୁକ୍ଳପକ୍ଷର ସପ୍ତମୀ, ଅଷ୍ଟମୀ ଓ ନବମୀ ତିଥିରେ ପୂଜାପାଠ କରାଯାଏ ଏବଂ ଦଶମୀ ଦିନ ମୂର୍ତ୍ତି ବିସର୍ଜନ ହୁଏ । ଦୁର୍ଗାପୂଜା ପରେ ଆଶ୍ୱୀନ ପୂର୍ଣ୍ଣମୀ ଦିନ ସୁଖ ସମ୍ପତ୍ତିର ଅଧିଷ୍ଠାତ୍ରୀ ଦେବୀ ଲକ୍ଷ୍ମୀଙ୍କର ପୂଜା ହୁଏ ।

ଦଶ ହାତରେ ଦଶଟି ଅସ୍ତ୍ର ଧରିଥିବା, ସିଂହବାହିନୀ ଦେବୀ ଦୁର୍ଗାଙ୍କୁ ଗୋଟିଏ ଶକ୍ତିମୟୀ ସୁନ୍ଦରୀ ଠାକୁରାଣୀ ଭାବରେ ବର୍ଣ୍ଣନା କରାଯାଇଛି । ଗୋଟିଏ ଭୟଙ୍କର ମଇଁଷି ଦେହରେ ତାଙ୍କର ତ୍ରିଶୂଳ ବିଦ୍ଧ ହୋଇଥାଏ ଏବଂ ସେଇ ମଇଁଷି ଦେହରୁ ଦୁଷ୍ଟ ରାକ୍ଷସ ମହିଷାସୁର ବାହାରୁଥାଏ । ତାକୁ କେବଳ ଦୈବୀଶକ୍ତି ଦ୍ୱାରା ହିଁ ପରାଜିତ କରାଯାଇପାରିବ ।

ଦେବୀଙ୍କର ମସ୍ତକରେ ମଙ୍ଗଳର ଚିହ୍ନ ତାଙ୍କ ସ୍ୱାମୀ ଶିବଙ୍କର ଗୋଟିଏ କ୍ଷୁଦ୍ର ମୂର୍ତ୍ତି ଲୁଚି ରହିଥାଏ । ଦୁଇପାଖରେ ଦେବୀଙ୍କର ଚାରୋଟିଯାକ ସନ୍ତାନ ଯଥା: ବିଦ୍ୟାଦାତ୍ରୀ ସରସ୍ୱତୀ, ଧନଦାତ୍ରୀ ଲକ୍ଷ୍ମୀ, ସିଦ୍ଧିଦାତା ଗଣେଶ ଏବଂ ଯୁଦ୍ଧ ଓ ପବିତ୍ରତାର ଦେବତା କାର୍ତ୍ତିକେୟ ବସିଥାଆନ୍ତି ।

ହିନ୍ଦୁମାନଙ୍କର ପ୍ରାଚୀନ ପୁରାଣ ଗ୍ରନ୍ଥରେ ଦୁର୍ଗା ଏବଂ ମହିଷାସୁରର କାହାଣୀ ବର୍ଣ୍ଣନା କରାଯାଇଛି ।

ଗୋଟିଏ ଭୀଷଣକାୟ ଅସୁର ଥିଲା । ସେ ଗୋଟିଏ ଭୟଙ୍କର ମଇଁଷି ରୂପ ଧରି ଦେବତାମାନଙ୍କ ଉପରେ ଅତ୍ୟାଚାର କରୁଥିଲା । ଶହେ ବର୍ଷ

ଲଢ଼େଇ ଚାଲିଲା ପରେ ଶେଷରେ ମହିଷାସୁର ଜୟଯୁକ୍ତ ହେଲା ଏବଂ ସ୍ୱର୍ଗରୁ ଦେବତାମାନଙ୍କୁ ତଡ଼ି ଇନ୍ଦ୍ରଙ୍କର ସିଂହାସନ ଦଖଲ କରି ନେଲା । ଏକଥା ଦେଖି ବ୍ରହ୍ମାଙ୍କ ସହିତ ସବୁ ଦେବତା ଶିବ ଓ ବିଷ୍ଣୁଙ୍କ ପାଖକୁ ଯାଇ ତାଙ୍କର ସାହାଯ୍ୟ ପ୍ରାର୍ଥନା କଲେ ।

ଯେତେବେଳେ ଦୁଇ ଠାକୁର ରାକ୍ଷସର ଅତ୍ୟାଚାରର କାହାଣୀ ଶୁଣିଲେ, ସେ ଦୁହେଁ ଏତେ ରାଗିଗଲେ ଯେ, ସେମାନଙ୍କ ଦେହରୁ ଏକ ଅପୂର୍ବ ଜ୍ୟୋତି ବାହାରିଲା । ସେଇ ଜ୍ୟୋତି ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ସବୁ ଆଡେ ବ୍ୟାପିଗଲା ଏବଂ ଶେଷରେ ଗୋଟିଏ ଠାକୁରାଣୀ ରୂପ ଧାରଣ କଲା ତାଙ୍କର ନାମ ହେଲା ଦୁର୍ଗା । ସବୁ ଦେବତା ତାଙ୍କୁ ବେଶ ପୋଷାକ ଓ ଲଢ଼େଇ ପାଇଁ ଭୟଙ୍କର ଅସ୍ତ୍ରଶସ୍ତ୍ର ଦେଲେ । ଦେବୀଙ୍କର ବାହନ ପାଇଁ ହିମାଳୟ ତାଙ୍କୁ ଗୋଟିଏ ଅପରାଜେୟ ସିଂହ ଦାନ କଲେ ।

ତାପରେ ଦେବୀ ଦଶ ଦିଗକୁ ତାଙ୍କର ହଜାର ହଜାର ହାତ ମେଲାଇ ଅସୁର ସହିତ ଯୁଦ୍ଧ କରିବାକୁ ଗର୍ଜନ କରି ଉଠିଲେ । ଏ କଥା ଦେଖି ମହିଷାସୁର ତାର ସୈନ୍ୟ ସାମନ୍ତ ସହିତ ଅସ୍ତ୍ରଶସ୍ତ୍ର ଧରି ବାହାରି ଆସିଲା ।

ଘମାଘୋଟ ଲଢ଼େଇ ଆରମ୍ଭ ହୋଇଗଲା । ସମୁଦ୍ର ମନ୍ଥି ହୋଇଗଲା, ପାହାଡ଼ ଉପୁଡ଼ି ପଡ଼ିଲା । ଦେବୀ ଯେତେବେଳେ 'ପାଶ' ନାମକ ଏକ ଅସ୍ତ୍ର ପ୍ରୟୋଗ କରି ମହିଷାସୁରର ହାତ ଗୋଡ ବାନ୍ଧି ତାକୁ ନିଷ୍ଫଳ କରି ପକାଇଲେ ସାରା ସୃଷ୍ଟି ସେତେବେଳେ ଭୟରେ ଥରିବାକୁ ଲାଗିଲା । ତାପରେ ମହିଷା ନାନା ରୂପଧରି ଲଢ଼େଇ କରିବାକୁ ଲାଗିଲା । ସେ ଖୁବ୍ ବଳବାନ ଓ ଦୁର୍ଦ୍ଦାନ୍ତ ଥିଲା । ଶେଷରେ ଦେବୀ ତାଙ୍କର ଖଡ଼୍ଗ ବାହାରକରି ତାକୁ ସଂପୂର୍ଣ୍ଣ ରୂପେ ବିନାଶ କଲେ ।

ଦେବତା ଓ ମନୁଷ୍ୟମାନେ କୃତଜ୍ଞତାରେ ଦେବୀଙ୍କ ଆଗରେ ମୁଣ୍ଡ ନୁଆଁଇ ତାଙ୍କୁ ପ୍ରଣାମ କଲେ । କରୁଣାମୟୀ ମାଆ ଦୁର୍ଗା ସେମାନଙ୍କୁ କହିଲେ 'ଗୋଟିଏ ବର ମାଗ, ମୁଁ ଦେବି' । ସେମାନେ ତାଙ୍କୁ ପ୍ରାର୍ଥନା କରି କହିଲେ—'ମାଆ, ଏଣିକି ଯେତେବେଳେ ଆମ ଉପରେ କିଛି ବିପଦ ଆପଦ ପଡ଼ିବ, ଆମେ ଡାକିବା ମାତ୍ରେ ତୁମେ ଆସି ସେଥିରୁ ଉଦ୍ଧାର କରିବ । ମାଆ କହିଲେ—'ତଥାସ୍ତୁ' ।

ସବୁ ପ୍ରାଚୀନ ଧର୍ମଗ୍ରନ୍ଥମାନଙ୍କରେ ସେଇ ଗୋଟିଏ କଥା କୁହା-ଯାଇଛି ଯେ,ଦେବତା ଓ ରାକ୍ଷସମାନଙ୍କ ମଧ୍ୟରେ କାଳେ କାଳେ ଲଢ଼େଇ ହୋଇଛି ଏବଂ ଶେଷରେ ଦେବତାମାନେ ଜିତିଛନ୍ତି । ଦୁର୍ଗାଙ୍କ ବିଷୟରେ ଥିବା କିମ୍ବଦନ୍ତୀର ଏହାହିଁ ହେଉଛି ସାରକଥା । ବହୁ ଦିନରୁ, ଏପରିକି

ହିନ୍ଦୁ ପୁରାଣ ଲେଖା ଯିବାର ବହୁ ପୂର୍ବରୁ ଏହି ବିଶ୍ୱାସ ଚଳି ଆସୁଛି। ଏହା ହେଉଛି ଅତ୍ୟାଚରିତ ଲୋକର ବିଳାପ ଏବଂ ଦୁଷ୍ଟମାନଙ୍କ କବଳରୁ ରକ୍ଷା କରିବା ପାଇଁ ଭଗବାନଙ୍କ ପାଖରେ ପ୍ରାର୍ଥନା। ଏଇ କଥାଟି ସବୁରି ମନକୁ ମାନିଛି।

ଆଗେ ଜମିଦାର ବା ସେଇ ଅଞ୍ଚଳର ଧନୀ ଲୋକମାନେ ଦୁର୍ଗାପୂଜା ନିଜ ଘରେ କରୁଥିଲେ ଏବଂ ସବୁ ଖର୍ଚ୍ଚ ନିଜେ ବହନ କରୁଥିଲେ। ଜାତି, ଧର୍ମ, ଧନୀ ଦରିଦ୍ର ବାଛ ବିଚାର ନ ରଖି ଆଖପାଖର ସବୁ ଲୋକ ଏଥିରେ ଅଂଶ ଗ୍ରହଣ କରୁଥିଲେ।

ପୂଜାପାଠ କାମ ଅବଶ୍ୟ ବ୍ରାହ୍ମଣମାନେ କରୁଥିଲେ; କିନ୍ତୁ ଢୋଲ ଓ ମହୁରି, ଯେଉଁଟିକି ନ ହେଲେ ନ ଚଳେ, ତାକୁ ବଜାଉଥିଲେ ମୁସଲମାନମାନେ। ଆଖପାଖ ଅନେକ ଗ୍ରାମର ଅଧିବାସୀ ଖାଲି କୁଣିଆ ଭାବରେ ଆସୁ ନ ଥିଲେ, ସେମାନେ କାମଦାମରେ ସମାନ ଭାବରେ ଭାଗ ନେଉଥିଲେ। ସେମାନଙ୍କ ମଧ୍ୟରୁ ଅଧିକାଂଶ ବହୁ କାମର ଦାୟିତ୍ୱ ତୁଲାଉଥିଲେ। କେହି ଛାମୁଣ୍ଡିଆ ପାଇଁ ବାଉଁଶ କାଟି ବୋହି ଆଣୁଥିଲେ, କେହି ତାକୁ ନେଇ ଯଥା ସ୍ଥାନରେ ବାନ୍ଧୁଥିଲେ; କେହି ମୂର୍ତ୍ତି ତିଆରି କରୁଥିଲେ, କେହି ମୂର୍ତ୍ତି ସଜାଉଥିଲେ, କେହି ମେଢ ସଜାଉ ଥିଲେ ଇତ୍ୟାଦି। ମାଳୀ ଫୁଲ ଦେଉଥିଲେ, ଦହିହାଣ୍ଡି ଧରି ଆସୁଥିଲେ। ପୁରୁଣା ଜମିଦାରମାନଙ୍କର ଉଆସର କାରୁକାମ ହେଉଛି ଏହାର ସାକ୍ଷୀ। ପୂଜା ମଣ୍ଡପରେ ପୂଜା ହୁଏ। ଆଗରେ ହଜାର ସଂଖ୍ୟାରେ ଗ୍ରାମବାସୀ ଆରାମରେ ବସିପାରିବା ଭଳି ଆଡିକର ଅଗଣା। ବିରାଟ ବିରାଟ ଭଣ୍ଡାର ଘର ଓ ରୋଷେଇ ଶାଳ। ସେଥିରେ ଅନେକ ଚୁଲି ଓ ଚୁଲି ଉପରେ ବିରାଟ ବିରାଟ କଡେଇ। ଛାମୁଣ୍ଡିଆ ବନ୍ଧା ଯାଇଥାଏ, ତଳେ ଗାଲିଚା ବିଛା ହୋଇଥାଏ।

ଏଠାରୁ କେହି ଅଖିଆ ଫେରି ଯାଆନ୍ତି ନାହିଁ। ସମସ୍ତଙ୍କୁ ଡାକିହାକି ଭୂରି ଭୋଜନ ଦିଆଯାଏ। ଗରିବ ଲୋକମାନଙ୍କୁ ନୂଆ ଲୁଗା ବଣ୍ଟାଯାଏ। ଆଜିକାଲି ରଜା ଜମିଦାରଙ୍କ ସ୍ଥାନରେ ସାଧାରଣ ଲୋକେ ଏ କାମରେ ଆଗେଇ ଆସିଲେଣି। ଦୁର୍ଗାପୂଜା ଆଜିକାଲି ଏକ ପ୍ରକାର ଜାତୀୟ ପର୍ବରେ ପରିଣତ ହେଲାଣି, ଯେଉଁଥିରେ କି, ଅଣ-ବଙ୍ଗାଳୀ ଓ ଅଣହିନ୍ଦୁମାନେ ମଧ୍ୟ ଭାଗ ନେଉଛନ୍ତି।

ସ୍ୱେଚ୍ଛାସେବକମାନେ ଚାନ୍ଦା ଆଦାୟ କରିବାକୁ ସପ୍ତାହକ ଆଗରୁ ବାହାରି ପଡନ୍ତି। ଯେଉଁଠି ଗୋଟିଏ ଅଞ୍ଚଳରେ ଦୁଇଟି ପୂଜା ହେଉଥାଏ, ସେଠାରେ ବେଳେ ବେଳେ ଚାନ୍ଦା ଆଦାୟକୁ କେନ୍ଦ୍ରକରି ଟିକିଏ ଗୋଳମାଳ

ହୁଏ । ପ୍ରତ୍ୟେକ ଦଳ ଅପର ଦଳକୁ ସେଠାରୁ ହଟାଇବାକୁ ଚେଷ୍ଟା କରନ୍ତି । ବିଚରା ଘର ମାଲିକ ମଝିରେ କଲବଲ ହୁଏ । ଅନେକ ସମୟରେ ଭକ୍ତି-ସଙ୍ଗୀତ ବଦଳରେ ସିନେମା ସଙ୍ଗୀତ ଗାନ କରାଯାଏ । ବଗିଚାରୁ ଫୁଲକୁଣ୍ଡ ଓ ଫୁଲ ଗଛରୁ ଫୁଲ ହରଣଚାଳ ହୋଇଯାଏ ।

ଏହି ଉତ୍ସବ ପୂର୍ବରୁ ଚାରିଆଡେ ଆନନ୍ଦର ବାତାବରଣ ଅନୁଭବ କରାଯାଏ । ଲୋକମାନେ ନୂଆ ଲୁଗା, ନୂଆ ଯୋତା, ଚାରିଦିନ ପାଇଁ ଭଲ ଖାଦ୍ୟ, ବନ୍ଧୁବାନ୍ଧବଙ୍କ ପାଇଁ ଉପହାର, ଡାକ୍ତରଖାନାର ଗରିବ ରୋଗୀ ଏବଂ ଅନାଥ ଅସହାୟ ଲୋକଙ୍କ ପାଇଁ ଉପହାର ଇତ୍ୟାଦି ବାବଦରେ ଆଗରୁ ପଇସା ସଞ୍ଚୟ କରି ରଖିଥାଆନ୍ତି । ପୂଜାସପ୍ତାହର ଝଲମଲ ଆଲୁଅ ଉଚ୍ଛୁଳା ସଂଗୀତ, ସୁସଜ୍ଜିତ ପୂଜାମଣ୍ଡପ, ତା' ଆଗରେ ସୁନ୍ଦର ବେଶ ପୋଷାକ ପିନ୍ଧି ମୂର୍ତ୍ତି ଦେଖିବାକୁ, ଜଣାଣ କରିବାକୁ ବା ସାଙ୍ଗ ସାଥୀ-ମାନଙ୍କୁ ଭେଟିବାକୁ ଆସିଥିବା ସ୍ତ୍ରୀ, ପୁରୁଷ, ପିଲା ଇତ୍ୟାଦିଙ୍କର ଭିଡ ଦେଖିଲେ କଲିକତା ସହରକୁ ସହଜରେ ଚିହ୍ନି ହେବ ନାହିଁ ।

ସହରରେ ଥିବା ଶହ ଶହ ପାର୍କ ଓ ଖୋଲା ପଡିଆରେ ପ୍ରତିବର୍ଷ ଦୁର୍ଗାପୂଜା ଅନୁଷ୍ଠିତ ହୁଏ । ଭିଡ ସମ୍ଭାଳିବା ହେଉଛି ସବୁଠାରୁ ଗୋଟିଏ ବଡ ସମସ୍ୟା । ପ୍ରଧାନ ପ୍ରଧାନ ରାସ୍ତାଗୁଡିକୁ ଏକତରଫା ରାସ୍ତାରେ ପରିଣତ କରାଯାଇଥାଏ । ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡିକ ପାନୀୟ ଜଳ ଏବଂ ଦରକାର ପଡିଲେ ପ୍ରାଥମିକ ଚିକିତ୍ସାର ବ୍ୟବସ୍ଥା କରି ଥାଆନ୍ତି । ଶେଷ ମୂହୂର୍ତ୍ତରେ କିଣାବିକା ପାଇଁ ଦୋକାନ ବଜାରଗୁଡିକ ଅନେକ ରାତି ପର୍ଯ୍ୟନ୍ତ ଖୋଲାଥାଏ । ଦରଦାମ ଅବଶ୍ୟ ଆକାଶ ଛୁଆଁ ବଢିଯାଇଥାଏ, ହେଲେ ତାକୁ କିଏ ଖାତିର କରୁଛି ? ଲୋକମାନଙ୍କ ମନରେ ଆନନ୍ଦ ଉଲ୍ଲାସ ଓ ବନ୍ଧୁପ୍ରୀତି ପୂରିଯାଇଥାଏ । ଲକ୍ଷ୍ମୀପୂଜା ଶେଷ ପର୍ଯ୍ୟନ୍ତ ସାତଦିନ କାଳ ଲୋକ-ମାନେ ସବୁ ଜଞ୍ଜାଳ ପାଶୋରି ଦେଇଥାଆନ୍ତି ।

କିନ୍ତୁ ଆମୋଦ ପ୍ରମୋଦ କେବଳ ସବୁକିଛି ନୁହେଁ । ଏହା ପଛରେ ଗଭୀର ଚିନ୍ତା ଅଛି । ନିଜର ବନ୍ଧୁ ଏବଂ ପଡୋଶୀଙ୍କ ପ୍ରତି କର୍ତ୍ତବ୍ୟଜ୍ଞାନ ବାତାବରଣକୁ ପୂର୍ଣ୍ଣ କରିଥାଏ । ଲୋକମାନେ ପୁରାତନ ଶତ୍ରୁତାକୁ ଭୁଲି, ନିଜର ଦୁଃଖକୁ ପଛରେ ପକାଇ ଭଲ କାମରେ ମନ ଦିଅନ୍ତି । ମାଟି ନିର୍ମିତ ସେଇ ସୁନ୍ଦର ଦେବୀ ମୂର୍ତ୍ତିଗୁଡିକର ମୁହଁରେ ଏଇ ଆଶ୍ୱାସନା ଥାଏ ଯେ, ଯେତେବେଳେ ମଣିଷର ଶକ୍ତି ହାର ମାନିଯାଏ, ସେତେବେଳେ ଏକ ଉଚ୍ଚତର ଶକ୍ତିର ଆବିର୍ଭାବ ହୁଏ । ମନରୁ ଅତୀତର ବିଫଳତା ପାଇଁ ଅନୁତାପ ଦୂର ହୋଇ ସେଠାରେ ନୂତନ ଶକ୍ତି ଏବଂ ଆନନ୍ଦ ଭରିଯାଏ ।

ତା'ପରେ ପୂଜା ବିଶେଷାଙ୍କ କଥା । ପ୍ରାୟତଃ ସବୁ ଶିଶୁ ପତ୍ରିକାର ପ୍ରକାଶକମାନେ ଗଳ୍ପ, ଗୀତ, ନାଟକରେ ଭରପୂର, ସୁନ୍ଦର ଛବିରେ ଚିତ୍ରିତ ଏବଂ ସୁଲଭ ମୂଲ୍ୟର ମନୋରମ ବିଶେଷାଙ୍କମାନ ପ୍ରକାଶ କରନ୍ତି । ଅନେକ ଅଜଣା ଅଶୁଣା ସାହିତ୍ୟିକଙ୍କ ସହିତ ବହୁ ନାମଜାଦା ଲେଖକ ଲେଖିକା ସେମାନଙ୍କର ବଛା ବଛା ଲେଖା ଏଥିରେ ଦିଅନ୍ତି । ଏଗୁଡ଼ିକ ପ୍ରକୃତରେ ପିଲାମାନଙ୍କର ଗୋଟିଏ ଗୋଟିଏ ସଂପତ୍ତି ଏବଂ ଏହାକୁ କିଣି ବାରମ୍ବାର ପଢ଼ିବା ପାଇଁ ସେମାନେ ମାସ ମାସ ଆଗରୁ ହାତ ଖର୍ଚ୍ଚା ବାବଦ ପଇସା ସାଇତି କରି ରଖି ଥାଆନ୍ତି । ପିଲାମାନେ ବଡ଼ମାନଙ୍କଠାରୁ ଯେଉଁ ପୂଜା ଖର୍ଚ୍ଚ ପାଇଥାଆନ୍ତି ତାକୁ ମଧ୍ୟ ଏଇଥିରେ ଖର୍ଚ୍ଚ କରନ୍ତି । ଏଥି ସହିତ ବୟସ୍କ ପାଠକମାନଙ୍କ ପାଇଁ ମଧ୍ୟ ପୂଜା ବିଶେଷାଙ୍କମାନ ପ୍ରକାଶ ପାଏ, ମାତ୍ର ଏଗୁଡ଼ିକ ପିଲାଙ୍କ ପତ୍ରିକା ସହିତ ଯୋଡ଼ ଦେଇ ପାରନ୍ତି ନାହିଁ ।

ଘରର ସ୍ତ୍ରୀଲୋକମାନେ ସୁଆଦିଆ ପିଠାପଣା ତିଆରି କରନ୍ତି । ଏଗୁଡ଼ିକ କଥା ଭାବିଲା ମାତ୍ରେ ପ୍ରତ୍ୟେକ ଲୋକର ଘର କଥା ମନେ ପଡ଼ିଯାଏ । ମୁଖ୍ୟତଃ ଅଟା, ଚିନି, ଗୁଡ଼, ନଡ଼ିଆ ଓ ମହୁରେ ତିଆରି ଏବଂ ଅଳେଇଚ ଯାଇଫଳ ଇତ୍ୟାଦି ମସଲାଦିଆ ଖାଦ୍ୟ ଜିନିଷ ଖରାପ ନ ହୋଇ ସେମିତି କେତେ ସପ୍ତାହ ପର୍ଯ୍ୟନ୍ତ ରହେ । ସେଗୁଡ଼ିକ ଗରିବ ଲୋକଙ୍କର ଖାଦ୍ୟ ହେଲେ ମଧ୍ୟ ସ୍ୱାଦରେ ରାଜାମହାରାଜାଙ୍କ ପାଇଁ ଉପଯୁକ୍ତ । ଉତ୍ସବରେ ତାହା ହେଉଛି ପ୍ରଧାନ କଥା । ତିନିଦିନ ପୂଜା ସରିବାପରେ ଶଙ୍ଖ ବଜାଇ, ଦେବୀଙ୍କର ସ୍ତୁତି ଗାଇ, ମୂର୍ତ୍ତିକୁ ତା'ର ମଣ୍ଡପରୁ ଉଠାଇ ବିସର୍ଜନ କରିବାକୁ ନିଆଯାଏ । ଏଥିପାଇଁ ଟ୍ରକ, କାର, ଟେମ୍ପୋ ଓ ବଳଦ ଗାଡ଼ିମାନ ବ୍ୟବହାର କରାଯାଏ, ତା, ନ ହେଲେ ମଜବୁତିଆ ଲୋକେ ମେଢ଼କୁ ଆଗ୍ରହରେ କାନ୍ଧେଇ ନିଅନ୍ତି । ମୂର୍ତ୍ତିକୁ ନଈ, ପୋଖରୀ ବା ହ୍ରଦରେ ନେଇ ବୁଡ଼ାଇ ଦିଆଯାଏ । ଯେତେ ଟାଣ ମନର ଲୋକ ହେଲେ ମଧ୍ୟ ଏତିକିବେଳେ ସେ ନିଶ୍ଚୟ ଦୁଃଖ ଅନୁଭବ କରିବ ।

ତାପରେ ଲୋକମାନେ ବାଟରେ ଗୀତ ଗାଇ ଏବଂ ପାଟିତୁଣ୍ଡ କରି ଘରକୁ ଫେରି ଆସନ୍ତି । ଏହାପରେ ଆରମ୍ଭ ହୁଏ ବିଜୟା ପର୍ବ । ବନ୍ଧୁବାନ୍ଧବଙ୍କୁ ଭେଟୋଳିଯିବା, ଶୁଭେଚ୍ଛା ପଠାଇବା ଖୁସିରେ କୋଳା କୋଳି ହେବା, ଘରେ ପିଠାପଣା କରିବା ଇତ୍ୟାଦି ହେଉଛି ପୁରାପୂରି ସାମାଜିକ ଘଟଣା । ପୂଜା ପରେ କେତେଦିନ ଧରି ଏମିତି ଚାଲେ ।

ପୂଜା ବେଳର ନାଚତାମସାକୁ ଭୁଲି ହେବ ନାହିଁ । ଆମୋଦ

ପ୍ରମୋଦ ଦିଗରେ ଏହାର ଭାଗ ବେଶି । ମାସକ ଆଗରୁ ନାଟକ ବଛା ଯାଇଥାଏ । କେତେଗୁଡିଏ ଜଣାଶୁଣା ନାଟକ ଥାଏ, ଯେଉଁ ଗୁଡିକ ବାର-ମ୍ବାର ଅଭିନୟ କରଯାଏ; ତଥାପି ଅଭିନେତା କି ଦର୍ଶକ କେହି ଏଥିରେ ବିରକ୍ତି ଅନୁଭବ କରନ୍ତି ନାହିଁ । ପାର୍ଟଗୁଡିକ ଭଉଁରଯାଏ । ଅଭିନେତା ବଛା ଯାଆନ୍ତି ଏବଂ ସପ୍ତାହକ ଆଗରୁ ସେମାନେ ଅକ୍ଷରେ ଅକ୍ଷରେ ସେଗୁ-ଡିକୁ ମୁଖସ୍ଥ କରି ଦେବାକୁ କୁହାଯାଏ । ତା'ପରେ ସବୁଠୁ ମଜା କାମ ରିହର୍ସାଲ ଆରମ୍ଭ ହୁଏ । ଏଥିରେ ଭାଗ ନେଉଥିବା ସ୍କୁଲ ପଢୁଆ ପିଲା ଏବଂ ସେ ବର୍ଷର ପରୀକ୍ଷାର୍ଥୀଙ୍କର ଅଭିଭାବକମାନଙ୍କର ଉତ୍କଣ୍ଠା ମଧ୍ୟରେ ପ୍ରତିଦିନ ନାଟକ ରିହାର୍ସାଲ ହୁଏ । ଭାଗ୍ୟର କଥା, ଦୁର୍ଗାପୂଜା ବର୍ଷରେ ଥରଟିଏ ପଡେ ଏବଂ ତାହା ପୁଣି ଶାରଦୀୟ ଛୁଟିରେ । ସାମାଜିକ ଦିଗରୁ ଏହା ଅତ୍ୟନ୍ତ ମୂଲ୍ୟବାନ । ମଫସଲ ହୋଇଥିଲେ ସାରା ଗାଆଁ ଏବଂ ସହର ହୋଇଥିଲେ, ସେଇ ଅଞ୍ଚଳର ବାସିନ୍ଦାମାନେ ଏଥିରେ ଯୋଗ ଦିଅନ୍ତି । ଏସବୁ ସୌଖୀନ ଭାବରେ କରଯାଏ । ଅଭିନେତା, ଅଭିନେତ୍ରୀ, ପ୍ରଯୋଜକ, ବେଶକାରୀ, ଦର୍ଶକ ଇତ୍ୟାଦି ସମସ୍ତେ ଜାତି ଧର୍ମ ନିର୍ବି-ଶେଷରେ ସ୍ଥାନୀୟ ଲୋକ, ଅଭିନୟ ଦେଖିବା ପାଇଁ ବସିବାବେଳେ ଉଚ୍ଚ-ନୀଚ କୌଣସି ବାଛ ବିଚାର ନ ଥାଏ । କେବଳ ବୁଢା ବୁଢୀ ଲୋକ ଏବଂ କେତେକ ବୟସ୍କ ମୁରବୀ ଲୋକଙ୍କ ପାଇଁ ଆଗରେ ଚୌକିର ବ୍ୟବସ୍ଥା କର-ଯାଇଥାଏ । ତା' ନ ହେଲେ ଆଉ ସମସ୍ତ ଲୋକ ଲଗାଲଗି ହୋଇ ତଳେ ବସନ୍ତି ।

ପ୍ରକୃତରେ କହିବାକୁ ଗଲେ, ବଙ୍ଗଳାର ସାଂସ୍କୃତିକ ଜୀବନ ଏବଂ ନିତିଦିନିଆ ଜୀବନ ଏଇ ସମୟରେ ଜାତୀୟ ଉଲ୍ଲାସରେ ଉଚ୍ଛୁଳି ଉଠେ ।

ଦୁର୍ଗାପୂଜାର ଅର୍ଥ ହେଉଛି ଘର ବାହୁଡା ଏବଂ ବନ୍ଧୁ ମିଳନ । ଏଇଟି ହେଉଛି ବର୍ଷର ସବୁଠାରୁ ବଡ ପର୍ବ । ଯେତେବେଳେ ରାତି ବଡ ହେବାକୁ ଲାଗେ, କାକର ପଡେ ଏବଂ ଆଶ୍ୱୀନର ଆଗମନ ହୁଏ, ପୁଣି ଥରେ ଦୁର୍ଗାପୂଜା ଆସିଗଲା ବୋଲି ଭାବି ସବୁରି ମନ ଆନନ୍ଦରେ ପୂରି-ଯାଏ ।

ଲୀଳା ମଜୁମ୍‌ଦାର

# ଦଶହରା

ପ୍ରତିବର୍ଷ ପ୍ରାୟ ସେପ୍‌ଟେମ୍ବର ମାସବେଳକୁ ମୌସୁମୀ ବାୟୁ ଧୀରେ ଧୀରେ ଅପସରିଯାଏ । ମୁଷଳଧାର ବର୍ଷା ପରିବର୍ତ୍ତେ ଏଣିକି ଝିପି ଝିପି ବର୍ଷା ହୁଏ ଏବଂ ଆକାଶ କଳାଘୁମର ବେଶ ଛାଡ଼ି ସଫା ନୀଳ ବର୍ଣ୍ଣ ଧାରଣ କରେ । ଚତୁର୍ଦ୍ଦିଗରେ ଆଶାର ବାତାବରଣ ଖେଳିଯାଏ ଏବଂ ପ୍ରତ୍ୟେକ ଲୋକ ପର୍ବପର୍ବାଣିର ଆଗମନକୁ ଅନେଇ ବସେ । ଏଗୁଡ଼ିକ ମଧ୍ୟରେ ପ୍ରଥମ ହେଉଛି ଦଶହରା ।

ଅନ୍ୟାନ୍ୟ ଅନେକ ପର୍ବ ଭଳି ଦଶହରା ହେଉଛି 'ପୁଣ୍ୟର ଜୟ ଏବଂ ପାପର କ୍ଷୟ'ର ପ୍ରତୀକ । ଏହା ସାରା ଦେଶରେ ଭିନ୍ନ ଭିନ୍ନ ଢଙ୍ଗରେ ପାଳିତ ହୁଏ । ଏହି ଉତ୍ସବଟି ଦଶଦିନ ଓ ଦଶରାତି ପର୍ଯ୍ୟନ୍ତ ଚାଲେ । ଏହାର ପ୍ରଥମ ନଅ ରାତିକୁ 'ନବରାତ୍ରି' ବୋଲି କହନ୍ତି । କେତେକ ଅଞ୍ଚଳରେ ଦଶହରାରେ ଦୁର୍ଗାଙ୍କୁ ଭିନ୍ନ ଭିନ୍ନ ବେଶରେ ପୂଜା କରାଯାଏ । ଆଉ କେତେକ ଅଞ୍ଚଳରେ ଲକ୍ଷ୍ମୀ ଏବଂ ସରସ୍ୱତୀଙ୍କୁ ପୂଜା କରାଯାଏ । ଉତ୍ତର ଭାରତରେ ଦଶହରା ପର୍ବ ଦଶଦିନ ଯାକ ସର୍ବସାଧାରଣ ସ୍ଥାନରେ ରାମଲୀଳା ଖୁବ୍ ଜମେ । ରାମାୟଣର ଭିନ୍ନ ଭିନ୍ନ କାହାଣୀଗୁଡ଼ିକୁ ଅଭିନୟ କରାଯାଏ ଏବଂ ଶେଷଦିନ ରାବଣର ଗୋଟିଏ ମୂର୍ତ୍ତି ପୋଡ଼ି ରାମଚନ୍ଦ୍ରଙ୍କର ବିଜୟ ଉତ୍ସବ ପାଳନ କରାଯାଏ ।

ଆମର ପ୍ରାଚୀନ ମହାକାବ୍ୟ ରାମାୟଣର କଥାବସ୍ତୁ ସହିତ ଆମେମାନେ ସୁପରିଚିତ । ରାମଚନ୍ଦ୍ରଙ୍କର ପତ୍ନୀ ସୀତାଙ୍କୁ ଲଙ୍କାର ଅସୁର ରାଜା ରାବଣ ହରଣ କରି ନେଇଥିବାରୁ, ତାହାରି କବଳରୁ ସୀତାଙ୍କୁ ଉଦ୍ଧାର କରିବା ନିମନ୍ତେ ରାମଚନ୍ଦ୍ର ତାଙ୍କର ସାନଭାଇ ଲକ୍ଷ୍ମଣଙ୍କ ସହିତ ଯୁଦ୍ଧଯାତ୍ରା କରିଥିଲେ । ତାଙ୍କୁ ସାହାଯ୍ୟ କରିଥିଲେ ବାନର ସେନାପତି ହନୁମାନ ଏବଂ ତାଙ୍କର ଅସଂଖ୍ୟ ବାନର ସୈନ୍ୟ ଏବଂ ଭଲ୍ଲୁକ ସୈନ୍ୟ । ଦୀର୍ଘ ଦଶଦିନ ଧରି ଭୟଙ୍କର ଲଢ଼େଇ ଚାଲିଲା । ଶେଷରେ ରାବଣର ପୁଅ ମେଘନାଦ, ଭାଇ କୁମ୍ଭକର୍ଣ୍ଣ ଏବଂ ନିଜେ ରାବଣ ମୃତ୍ୟୁ ବରଣ କଲେ । ରାମଚନ୍ଦ୍ର ଜୟଯୁକ୍ତ ହେଲେ, ସୀତାଙ୍କୁ ଉଦ୍ଧାର କରାଗଲା । ରାମଚନ୍ଦ୍ରଙ୍କ ସହିତ ସୀତାଙ୍କର ମିଳନ ହେଲା ଏବଂ ବନବାସ କାଳ ଶେଷ ହୋଇଯାଇଥିବାରୁ ସେମାନେ ସମସ୍ତେ ଆକାଶ ମାର୍ଗରେ ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ କଲେ ।

ଅତ୍ୟନ୍ତ ଭକ୍ତି ଏବଂ ଆଗ୍ରହର ସହିତ ବାର୍ଷିକ ରାମଲୀଳା ଅଭିନୟ

ଆୟୋଜନ କରାଯାଏ । ବର୍ଷାଦିନ ଚାଲିଯିବା ପରେ ପରେ, ଯେତେବେଳେ ଫସଲ କଟା ଏବଂ ଅମଳ କାମ ସରିଯାଇଥାଏ, ସେତିକିବେଳେ ଲୋକମାନେ ଅଭିନୟର ଆୟୋଜନରେ ଲାଗି ପଡନ୍ତି ।

ଗାଆଁମାନଙ୍କରେ ସ୍ଥାନୀୟ ନାଟଦଳ ପାଇଁ ପଞ୍ଚାୟତ ତରଫରୁ ଚାନ୍ଦା ଆଦାୟ କରାଯାଏ । ନାଟଦଳ ରିହର୍ସାଲ ଆରମ୍ଭ କରି ଦିଅନ୍ତି । ବାନର ସୈନ୍ୟ, ଭଲ୍ଲୁକ ସୈନ୍ୟ ଓ ରାବଣର ଅସୁର ବାହିନୀ ପାଇଁ ମୁଖା, ମୁକୁଟ ଧନୁ, ତୀର ଇତ୍ୟାଦି ଉପକରଣମାନ ଯୋଗାଡ କରାଯାଏ,ଗାଁ ମୁଣ୍ଡ ପଡିଆରେ ଗୋଟିଏ ପେଣ୍ଡାଲ ବନ୍ଧାଯାଏ । ଦଶଦିନ ଯାଏ ଏଠାରେ ପ୍ରତିଦିନ ସଞ୍ଜରେ ରାମାୟଣର ପ୍ରଧାନ ପ୍ରଧାନ ଘଟଣାଗୁଡିକ ଅଭିନୟ କରାଯାଏ ଏବଂ ଶେଷ ଦିନ ବାଉଁଶ ଓ କାଗଜ ଇତ୍ୟାଦିରେ ତିଆରି କରାଯାଇଥିବା ରାବଣ, ମେଘନାଦ ଓ କୁମ୍ଭକର୍ଣ୍ଣର ତିନୋଟି ବିରାଟ ବିରାଟ ପ୍ରତିମୂର୍ତ୍ତି ଭିତରେ ବାରୁଦ ଓ ଫୋଟକା ବାଣ ଭର୍ତ୍ତି କରି ନିଆଁ ଲଗାଇ ଦିଆଯାଏ । ସେଗୁଡିକ ହୁତ-ହୁତ୍ ହୋଇ ଜଳିବା ସଙ୍ଗେ ସଙ୍ଗେ ଫୋଟକାଗୁଡିକ ଢୋ-ଢା ଶବ୍ଦ କରି ଫୁଟେ । ମୂର୍ତ୍ତି ତିନୋଟି ଜଳି ଜଳି ଶେଷରେ ତଳେ ପଡି ଲିଭିଯାଏ । ଅଭିନୟରେ ପୁଣିଥରେ ଦୁଷ୍ଟ ରାକ୍ଷସମାନେ ପରାଜିତ ହୁଅନ୍ତି ।

ବଡ ବଡ ସହରମାନଙ୍କର ଗଳିଆ ଅଞ୍ଚଳରେ ସ୍ଥାନୀୟ କମିଟିମାନ ଗଠନ କରାଯାଇ ଅଭିନୟ ନିମନ୍ତେ ଚାନ୍ଦା ଆଦାୟ କରାଯାଏ । ପାଖାପାଖି ଅଞ୍ଚଳରେ ରହୁଥିବା ଲୋକମାନଙ୍କ ମଧ୍ୟରୁ ଅଭିନେତା ହୋ ଯାଆନ୍ତି । ଅବଶ୍ୟ ଆଜିକାଲି ରାମ, ରାବଣ ଓ ହନୁମାନ ଭଳି ବଡ ବଡ ଭୂମିକାରେ ଅଭିନୟ କରିବା ପାଇଁ ପଇସା ଦେଇ ଜଣାଶୁଣା ଅଭିନେତାଙ୍କୁ ଅଣାଯାଉଛି । ବହୁ ଦିନରୁ ଚାଲି ଆସିଥିବା ଏଇ ରାମଲୀଳାରେ ସ୍ତ୍ରୀଲୋକମାନେ ଅଂଶ ଗ୍ରହଣ କରନ୍ତି ନାହିଁ । ସୀତା ଓ ଅନ୍ୟାନ୍ୟ ନାରୀ ଭୂମିକାରେ ପୁଅ ପିଲମାନେ ଘାଘରା ଓ ଶାଢୀ ପିନ୍ଧି ଓ ସେଇ ଅନୁସାରେ ବେଶ ହୋଇ ଅଭିନୟ କରନ୍ତି । ଏଇ ପିଲମାନେ ମୁହଁରେ ମୁଖା ପିନ୍ଧି ବିଶେଷ କରି ସୂର୍ପଣଖା ଏବଂ ଅନ୍ୟାନ୍ୟ ଦୁଷ୍ଟା ରାକ୍ଷସୀମାନଙ୍କ ଭୂମିକାରେ ଅଭିନୟ କରନ୍ତି ।

ଦିଲ୍ଲୀରେ ଦଶହରା ପର୍ବର ଶେଷ ଦିନଟି ଗୋଟିଏ ଜାତୀୟ ପର୍ବର ଗୁରୁତ୍ୱ ଲାଭ କରିଛି । ଉତ୍ସବ ପାଇଁ ବିରାଟ ରାମଲୀଳା ମଇଦାନ ସୁନ୍ଦର ଭାବରେ ସଜାଯାଏ । ତିନି ଅସୁରଙ୍କର ବିରାଟକାୟ ମୂର୍ତ୍ତିଗୁଡିକ ପ୍ରାୟ ୧୨୦-୧୨୫ ଫୁଟ ଉଚ୍ଚ ଏବଂ ତା' ଭିତରେ ସବୁଠୁ ଭଲ କିସମର ବାରୁଦ ବାଣ ଭର୍ତ୍ତି କରା ଯାଇଥାଏ । ପ୍ରତିବର୍ଷ ଅଭିନୟର ନୂଆ ନୂଆ କୌଶଳ-

ମାନ ବାହାର କରାଯାଏ । ୧୯୭୮ ମସିହାରେ ହନୁମାନ ପାର୍ଟ କରୁଥିବା ଜଣେ ସର୍କସ ଖେଳାଳୀ, ତାରରେ ଝୁଲି ଝୁଲି ଦର୍ଶକମାନଙ୍କ ମୁଣ୍ଡ ଉପରେ ଉଡ଼ିଯାଇଥିଲା ।

ଆମେମାନେ ଗ୍ରାମରେ ଥାଉଁ ବା ସହରରେ ଥାଉଁ, ସମସ୍ତେ କିନ୍ତୁ ଏଇ ବାର୍ଷିକ ପର୍ବ ଦେଖିଥାଉଁ । ଆମମାନଙ୍କ ମଧ୍ୟରୁ କେହି କେହି ଏଥିରେ ଅଂଶ ଗ୍ରହଣ କରିଥାଉଁ ମଧ୍ୟ । କିନ୍ତୁ ବାରାଣସୀ ନିକଟବର୍ତ୍ତୀ ଗଙ୍ଗାନଦୀ କୂଳରେ ଥିବା ରାମନଗରଠାରେ ଯେଉଁ ପ୍ରସିଦ୍ଧ ରାମଲୀଳା ହୁଏ । ତାକୁ ଦେଖିବାର ସୁଯୋଗ ଆମ ଭିତରୁ କ୍ୱଚିତ ଲୋକ ପାଇଥିବେ । ରାମନଗରର ରାମଲୀଳା ପ୍ରକୃତରେ ଗୋଟିଏ ଉଲ୍ଲେଖଯୋଗ୍ୟ ଘଟଣା । ଏହା ଖାଲି ଗୋଟିଏ ଅଭିନୟ ନୁହେଁ ବରଂ ଏହା ଗୋଟିଏ ଧର୍ମମେଳା । ଏଥିରେ ହଜାର ହଜାର ଲୋକ ଯୋଗ ଦିଅନ୍ତି । ତିରିଶ ଦିନ ଧରି ଏଇ ଲୀଳା ଚାଲେ । ଆଜିକୁ ପ୍ରାୟ ଶହେ ବର୍ଷ ତଳେ ବନାରସର ମହାରାଜାଙ୍କ ଦ୍ୱାରା ଏହା ପ୍ରଥମେ ଆରମ୍ଭ କରାଯାଇଥିଲା । ଏବେ ମଧ୍ୟ ସହରରେ ଥିବା ଦୁର୍ଗ ମଧ୍ୟସ୍ଥ ରାଜପ୍ରାସାଦରେ ତାଙ୍କର ଯେଉଁ ଉତ୍ତରାଧିକାରୀମାନେ ଅଛନ୍ତି, ସେମାନେ ଏହାକୁ ବଞ୍ଚାଇ ରଖିଛନ୍ତି ।

ରାମନଗରର ରାମଲୀଳା ଷୋଡଶ ଶତାବ୍ଦୀର ସନ୍ଥ କବି ତୁଳସୀ-ଦାସଙ୍କ ରଚିତ ରାମାୟଣ 'ରାମଚରିତ ମାନସ' ଉପରେ ଆଧାରିତ । ଏହି ଗ୍ରନ୍ଥଟି ସଂସ୍କୃତ ଭାଷାରେ ଲିଖିତ ମହର୍ଷି ବାଲ୍ମୀକିଙ୍କର ମୂଳ ରାମାୟଣର ଏକ ଲୋକପ୍ରିୟ ହିନ୍ଦୀ ରୂପାନ୍ତର । ତୁଳସୀଦାସଙ୍କର ସମସ୍ତ ପଦାବଳୀ ହେଉଛି ଚଉପଦୀ । ଏଗୁଡ଼ିକ ନିର୍ଦ୍ଦିଷ୍ଟ ଛନ୍ଦରେ ତାଳଦେଇ ସୁନ୍ଦର ଭାବରେ ଗାନ କରାଯାଏ । ଚଉପଦୀଗୁଡ଼ିକରେ ଖାଲି କାହାଣୀ ନାହିଁ, ଏଥିରେ ରାମଭକ୍ତ ଗୋସ୍ୱାମୀ ତୁଳସୀଦାସଙ୍କର ଉଚ୍ଚ ଭାବନାଗୁଡ଼ିକ ନିହିତ । ଏପରି ଖୁବ୍ କମ ଲୋକ ଅଛନ୍ତି, ଯେଉଁମାନେ 'ରାମଚରିତ ମାନସ' ଶୁଣି ଭାବ-ବିହ୍ୱଳ ହେବେ ନାହିଁ ଏବଂ ଏପରିକି ତାଙ୍କ ଆଖିରୁ ଲୁହ ନ ଗଡ଼ିବ ।

ଦୁଷ୍ଟ ଅସୁର ରାବଣର ଅତ୍ୟାଚାରରୁ ପୃଥିବୀକୁ ରକ୍ଷା କରିବା ନିମନ୍ତେ ଦେବତାମାନେ ଭଗବାନ ବିଷ୍ଣୁଙ୍କ ନିକଟରେ ପ୍ରାର୍ଥନା କରୁଥିବା ଗୋଟିଏ ଦୃଶ୍ୟରୁ ରାମନଗର ରାମଲୀଳା ଆରମ୍ଭ ହୁଏ । ଫଳରେ ବିଷ୍ଣୁ ଭଗବତ୍ ଇଚ୍ଛା ପୂରଣ କରିବା ନିମନ୍ତେ ମର୍ତ୍ତ୍ୟରେ ରାମ ରୂପରେ ଜନ୍ମ ହୁଅନ୍ତି । ରାମନଗରର ପ୍ରତ୍ୟେକ ଅଞ୍ଚଳ ନାଟକର ଭିନ୍ନ ଭିନ୍ନ ଦୃଶ୍ୟ ପାଇଁ ବ୍ୟବହୃତ ହୁଏ । ପୁରୁଣା ରାଜପ୍ରାସାଦର ବାହାର ଅଂଶ ହେଉଛି ଅଯୋଧ୍ୟା । ଏଇଠାରେ ରାଜା ଦଶରଥଙ୍କର ପ୍ରଥମ ଦରବାରର ଦୃଶ୍ୟ ଦେଖାଯାଏ ।

ତା'ପରେ ଯେତେବେଳେ ରାମଚନ୍ଦ୍ର ବନବାସ କରନ୍ତି ସେତେବେଳେ ସୀତା, ଲକ୍ଷ୍ମଣ ଓ ସେ, ରାଜପ୍ରାସାଦଠାରୁ ଅନେକ ଦୂରରେ ଥିବା ମଫସଲ ଅଞ୍ଚଳରେ ଏକ ଜଙ୍ଗଲକୁ ଯାତ୍ରା କରନ୍ତି । ସେମାନେ ସନ୍ନ୍ୟାସୀ ବେଶ ଧରି ବାଟରେ ଯିବାବେଳେ ଦର୍ଶକମାନେ ମଧ୍ୟ ତାଙ୍କ ପଛେ ପଛେ ଯାଆନ୍ତି ଏବଂ ପୁରୋହିତମାନେ ରାମଚରିତ ମାନସରେ ସେଇ ଦୃଶ୍ୟ ବିଷୟରେ ଲେଖାଥିବା ଚଉପଦୀଗୁଡ଼ିକ ଗାଉ ଥାଆନ୍ତି ।

ରାମନଗରର ବିରାଟ ମଇଦାନ ହେଉଛି ଲଙ୍କା ଏବଂ ପଡ଼ିଆର ଗୋଟିଏ କୋଣ ହେଉଛି ଅଶୋକବନ । ସୀତା ଏଇଠି ବନ୍ଦିନୀ ହୋଇ ବସି ଥାଆନ୍ତି । ଦୃଶ୍ୟଗୁଡ଼ିକ ବଦଳିବା ସଙ୍ଗେ ସଙ୍ଗେ ଦର୍ଶକମାନେ ମଧ୍ୟ ଗୋଟିଏ ଜାଗାରୁ ଆଉ ଗୋଟିଏ ଜାଗାକୁ ଆଗେଇ ଯାଆନ୍ତି । ଦୃଶ୍ୟ ମଞ୍ଚରେ ଯେଉଁଠି ରଥ ଟାଣିବା ଦରକାର ହୁଏ; ମନେକର ରାମଚନ୍ଦ୍ର ସଦଳବଳ ପୁଷ୍ପକଯାନରେ ବସି ଅଯୋଧ୍ୟାକୁ ଫେରୁଛନ୍ତି, ଅଥଚ ଆକାଶରେ ରଥ ଉଡ଼ିବାର ଦୃଶ୍ୟ ଦେଖାଯାଇ ପାରିବ ନାହିଁ ଏବଂ ଏହାକୁ ତଳେ ଟାଣି ଟାଣି ନେବାକୁ ହେବ, ଦର୍ଶକମାନେ ଟିକିଏ ହେଲେ ସଂକୋଚ ନକରି ହାତ ବଢ଼ାଇ ଲଙ୍କାଠାରୁ ଅଯୋଧ୍ୟା ପର୍ଯ୍ୟନ୍ତ ରଥକୁ ଟାଣି ଟାଣି ନିଅନ୍ତି ।

ଲଢ଼େଇର ଦୃଶ୍ୟ ହେଉଛି ସବୁଠାରୁ ଚିତ୍ତାକର୍ଷକ । କଳ୍ପନା କର, ଗୋଟିଏ ବିରାଟ ଖୋଲା ପଡ଼ିଆ, ମଞ୍ଚରେ ଏକ ବଡ଼ ପେଣ୍ଡାଲ, ବାର ତେର ବର୍ଷ ବୟସର ସୁନ୍ଦର ସୁନ୍ଦର ଦୁଇଟି ବ୍ରାହ୍ମଣ ପିଲା, ରାମ ଓ ଲକ୍ଷ୍ମଣ ବେଶରେ ପେଣ୍ଡାଲର ଗୋଟିଏ ପାଖରେ ବସିଥିବେ । ସେମାନଙ୍କର ମୁହଁ ସୁନ୍ଦର ଭାବରେ ଚିତ୍ର କରାଯାଇଥିବ, ମୁଣ୍ଡରେ ଏକ ଚମତ୍କାର ମୁକୁଟ ଥିବ । ସେମାନଙ୍କର ପୋଷାକରେ ସୁନ୍ଦର କାରୁକାମ ହୋଇଥିବ ଏବଂ ସେମାନେ ହାତରେ ଧନୁଶର ଧରିଥିବେ । ସେମାନଙ୍କ ପଛରେ ବ୍ୟାସ ବା ପଣ୍ଡିତମାନେ ବସି ପାର୍ଟ ବତାଇ ଦେଉଥିବେ, କାରଣ ଦୀର୍ଘ ତିରିଶ ଦିନର ପାର୍ଟ ଜଣଙ୍କ ପକ୍ଷେ ନିର୍ଭୁଲ ଭାବେ ମନେରଖିବା ସହଜ ନୁହେଁ । ପେଣ୍ଡାଲ ଉପରେ ଖୁବ ଦୂରରେ ଗୋଟିଏ ପାଖକୁ ତିନୋଟି ବିରାଟ ରାକ୍ଷସଙ୍କର ପ୍ରତିମୂର୍ତ୍ତି ରଖାଯାଇଥାଏ ଏବଂ ସେଇ ମୂର୍ତ୍ତି ଆଗରେ ମେଘନାଦ ଓ କୁମ୍ଭକର୍ଣ୍ଣ ଭୂମିକାରେ ଅଭିନୟ କରୁଥିବା ପ୍ରକୃତ ଅଭିନେତା ବସନ୍ତି । ପେଣ୍ଡାଲ ଚାରି ପାଖରେ ପ୍ରାୟ ଲକ୍ଷେ ପର୍ଯ୍ୟନ୍ତ ଲୋକ ଜମି ଥାଆନ୍ତି; ଗୋଟିଏ ପାଖରେ ସ୍ତ୍ରୀଲୋକ, ଅନ୍ୟ ପାଖରେ ପୁରୁଷ ଲୋକ, ରାମ ଚରିତ ମାନସ ଗାଉଥିବା ପଣ୍ଡିତମାନେ ତାଙ୍କ ଦଳପତିଙ୍କ ଆଗରେ ବହି ଖୋଲି ଏକାଠି ବସିଥାଆନ୍ତି । ଦୁଇଟି ଉଜ୍ଜ୍ୱଳ ଆଲୋକ ଗାୟକମାନଙ୍କ ଉପରେ ପଡ଼ିଥାଏ । ଗାୟକମାନଙ୍କ

ପଙ୍କରେ ତିନି ଚାରୋଟି ହାତୀ ପିଠିରେ ଚିତ୍ର ବିଚିତ୍ର ହାଓଦା ଉପରେ ମୁଖ୍ୟ ଅତିଥି ମାନେ ବସି ଥାଆନ୍ତି ।

ଗୋଟିଏ ନାଲିରଙ୍ଗର ବଡ ମୁଖା ପିନ୍ଧି ହନୁମାନ ଏବଂ ତା' ସହିତ ବାନର ସୈନ୍ୟ ପେଣ୍ଡାଲ ଉପରକୁ ଆସନ୍ତି । ତାଙ୍କ ଆଗରେ ରାକ୍ଷସବାହିନୀ ତିଆର ହୋଇ ଥାଆନ୍ତି । ସେମାନେ ନାଲି ମୁଖା ପିନ୍ଧି ବାନର ଭୂମିକାରେ ଏବଂ ନୀଳ ମୁଖା ପିନ୍ଧି ଭଲ୍ଲୁକ ଭୂମିକାରେ ଅଭିନୟ କରନ୍ତି । ତୁମେ ଅନୁମାନ କରି ପାରୁଥିବ, ଏଥି ନିମନ୍ତେ ବଛା ଯିବା ପାଇଁ ପିଲାମାନେ କି ଆଗ୍ରହରେ ଅନାଇ ରହିଥାଆନ୍ତି । ଅସୁରମାନଙ୍କ ଭୂମିକାରେ ବୟସ୍କ ଲୋକ-ମାନେ ଭୟଙ୍କର ଓ ବିକଟାଳ ମୁଖା ପିନ୍ଧି, ଡିମା ଡିମା ଆଖି କାଢି, ହାତୀ ଭଳିଆ ଦାନ୍ତ ଦେଖାଇ ନାଲ ନାଲ ଜିଭ ଲହ ଲହ କରି, ମୁନିଆ ମୁନିଆ କାନ ଓ ଶିଙ୍ଗ ଦେଖାଇ ଆସନ୍ତି । ମାଙ୍କଡ ଓ ଭାଲୁମାନେ ଯେତେବେଳେ ରାକ୍ଷସମାନଙ୍କ ଆଡକୁ ତୀରମାରନ୍ତି, ଦର୍ଶକମାନେ ସେତେବେଳେ ହସି ହସି ଗଡିଯାଆନ୍ତି । ଆଉ ମଧ୍ୟ ଯେତେବେଳେ ଗୋଟିଏ ବିକଟ ମୁଖା ରାକ୍ଷସ ଦୁଲକରି ତଳେ ପଡିଯାଏ, ଦର୍ଶକମାନେ ଖୁବ୍ ଯୋରରେ ପାଟି କରନ୍ତି, 'ରାମ ରାମ ଜୟ ସୀତାରାମ ।' ରାମ ଓ ରାବଣଙ୍କ ମଧ୍ୟରେ ଯେତେ-ବେଳେ ଲଢେଇ ହୁଏ ସେତେବେଳେ ସବୁଠୁ ବଡ ପାଟିରେ ଜୟଧ୍ୱନି କରାଯାଏ । ଶେଷରେ ରାବଣ ଯେତେବେଳେ ବଧ ହୁଏ, ଅଭିନେତା ତଳେ ଶୋଇଯାଏ ଏବଂ ବାରୁଦ ବାଣ ଭର୍ତ୍ତି କରାଯାଇ ଥିବା ରାବଣର ଗୋଟିଏ ବିରାଟ ପ୍ରତିମୂର୍ତ୍ତି ଦେହରେ ନିଆଁ ଲଗାଇ ଦିଆଯାଏ । ଫଳରେ ସେଇ ବିରାଟ ପ୍ରତିମୂର୍ତ୍ତିଟା ରାତିର ଅନ୍ଧାର ଭିତରେ ତାରା ଫୁଟିଲା ଭଳି ଝଲମଲ କରି ଜଳିଯାଏ । ତା'ପରେ ସମଗ୍ର ଦର୍ଶକ ମଣ୍ଡଳୀ ମଧ୍ୟରୁ 'ଜୟ ସୀତା-ରାମ' ଧ୍ୱନି ଉଚ୍ଛୁଳି ଉଠେ ।

ତା'ପର ରାତି ହେଉଛି 'ଭରତ ମିଳନ' । ରାଜକୁମାର ଭରତ ତାଙ୍କ ରାଜପାରିଷଦମାନଙ୍କ ସହିତ ନଦୀକୂଳକୁ ଆସି ନଦୀ ପାର ହୁଅନ୍ତି ଏବଂ ସେଠାରେ ଦୁଇଭାଇଙ୍କର ହୃଦୟ ସ୍ପର୍ଶୀ ଦୃଶ୍ୟ ଅଭିନୀତ ହୁଏ । ସେମାନେ ସମସ୍ତେ ନଗରକୁ ଫେରନ୍ତି । ତାଙ୍କ ପଛେ ପଛେ ଆସନ୍ତି ଦର୍ଶକ ମଣ୍ଡଳୀ । ମନେହୁଏ, ସେମାନେ ଯେମିତି ବିଂଶ ଶତାବ୍ଦୀର ଲୋକ ନୁହନ୍ତି, ସେମାନେ ହେଉଛନ୍ତି ରାମଚନ୍ଦ୍ରଙ୍କ ପଛେ ପଛେ ଆସୁଥିବା ସେ ଯୁଗର ଅଯୋଧ୍ୟା ବାସୀ । ଏଇଭଳି ଭାବରେ ଏଠାରେ ଇତିହାସ, ସଂସ୍କୃତି ଏବଂ ଧର୍ମର ଏକ ସୁନ୍ଦର ମିଳନ ଘଟେ । ଏହା ଏକ ଅଦ୍ଭୁତ ଏବଂ ଆଶ୍ଚର୍ଯ୍ୟଜନକ ଘଟଣା ।

ଶେଷ ଦିନ ରାମଚନ୍ଦ୍ରଙ୍କର ଅଭିଷେକ ଉତ୍ସବ ତଥା ପୁଣ୍ୟର ଜୟ ଓ ପାପର କ୍ଷୟ ଉପଲକ୍ଷେ ପ୍ରତ୍ୟେକ ଲୋକ ଆସି ପୂଜା-ଆରତିରେ ଯୋଗ ଦିଅନ୍ତି ।

* * * * *

ତାମିଲନାଡୁରେ ଦଶହରା 'ନବରାତ୍ରି' ନାମରେ ପରିଚିତ । ନଅ ରାତି ମଧ୍ୟରୁ ତିନି ରାତି ଲକ୍ଷ୍ମୀଙ୍କ ପାଇଁ, ତିନି ରାତି 'ଶକ୍ତି' ବା ପାର୍ବତୀଙ୍କ ପାଇଁ, ଆଉ ତିନି ରାତି ସରସ୍ୱତୀଙ୍କ ପାଇଁ ରଖାଯାଇଥାଏ । ପ୍ରତ୍ୟେକ ଘରେ ଗୋଟିଏ 'କୋଲୁ' ବା ସୁସଜ୍ଜିତ ପାହାଚ ଉପରେ ନାନା ପ୍ରକାର କଣ୍ଢେଇ, ଠାକୁର ଠାକୁରାଣୀ ତଥା ପଶୁପକ୍ଷୀଙ୍କ ମାଟି ମୂର୍ତ୍ତି ରଖାଯାଇଥାଏ । ଆଉ ମଧ୍ୟ କୋଲୁ ଉପରେ ମାଟି ଘଡ଼ି ନଚେତ ତମ୍ବା କିମ୍ବା ଆଲୁମିନିୟମ ତାଳରେ ଦୁର୍ଗାଙ୍କ ନାମରେ କଳସ ବସାଯାଏ । ପ୍ରତିଦିନ ସଂଧ୍ୟାରେ ସ୍ତ୍ରୀ ଲୋକମାନେ ଘରକୁ ଘର ବୁଲି ଯାଆନ୍ତି ଏବଂ ପରସ୍ପର କୋଲୁ ଆଗରେ ଗୀତ ଗାଇ ନାଚନ୍ତି । ନବରାତ୍ରିର ନବମ ଦିନ ସରସ୍ୱତୀ ପୂଜା କରାଯାଏ । ଏଇ ପୂଜାରେ ବହି ଏବଂ ନିଜର ବୃତ୍ତିଗତ ଉପକରଣମାନ ରଖାଯାଏ । ପାଠ-ପଢୁଆ ପିଲା ତା'ର କଲମ, ଚାଷୀ ତା'ର ଲଙ୍ଗଳ ଓ ବଢେଇ ତା'ର କରତ ରଖେ । ସେଦିନ ସମସ୍ତଙ୍କର କାମ ବନ୍ଦ । ତା' ପରଦିନ ଦଶମୀ । ଏହା ହେଉଛି ବିଜୟା ଦଶମୀ । ଏଇଦିନ ଲୋକମାନେ ପୁଣି ନିଜ ନିଜର ଧନ୍ଦାରେ ଲାଗିପଡ଼ନ୍ତି । ବିଜୟା ଦଶମୀ ଦିନଟି ମଧ୍ୟ ହେଉଛି ବିଦ୍ୟାରମ୍ଭ ଦିବସ । ଏଇ ଦିନ ସାଧାରଣତଃ ଶିଶୁମାନେ ଅକ୍ଷର ଶିକ୍ଷା ଆରମ୍ଭ କରନ୍ତି ।

କର୍ଣ୍ଣାଟକରେ ଦଶହରା ହେଉଛି ବର୍ଷ ମଧ୍ୟରେ ସବୁଠାରୁ ବଡ ପର୍ବ । ଚାମୁଣ୍ଡି ପର୍ବତ ଉପରେ ଥିବା ବିରାଟ ଚାମୁଣ୍ଡେଶ୍ୱରୀ ମନ୍ଦିରରେ ହଜାର ହଜାର ଭକ୍ତ ମେଳ ହୁଅନ୍ତି । ଚାମୁଣ୍ଡେଶ୍ୱରୀ ବା ଦୁର୍ଗା ହେଉଛନ୍ତି ମହୀଶୂର ସହରର ଅଧିଷ୍ଠାତ୍ରୀ ଦେବୀ । ପରିଷ୍କାର ପରିଚ୍ଛନ୍ନ କରାଯାଇଥିବା ସୁସଜ୍ଜିତ ସହରଟି ଅସଂଖ୍ୟ ଅସ୍ଥାୟୀ ଧରଣର ଦୋକାନ ବଜାର ସହିତ ଉତ୍ସବମୁଖର ହୋଇ ଉଠେ । ଅନ୍ୟ ପକ୍ଷରେ କେରଳରେ ଏହା ଗୋଟିଏ ଛୋଟିଆ ପର୍ବ । ହିନ୍ଦୁ ଲୋକମାନେ ନିଜ ନିଜ ଘରେ ଚୁପଚାପ ସରସ୍ୱତୀ ପୂଜା ଏବଂ ବିଜୟାଦଶମୀ ପାଳନ କରନ୍ତି ।

ଉମା ଆନନ୍ଦ

# ଦୀପାବଳୀ

'ଦିବାଲି'ର ଅନ୍ୟ ନାମ ଦୀପାବଳୀ । ଅକ୍ଟୋବର ଓ ନଭେମ୍ବର ମାସର ମଝାମଝି ସମୟରେ, ଯେତେବେଳେ ଅଳ୍ପ ଅଳ୍ପ ଶୀତ ପଡି ଆସିଥାଏ, ଠିକ୍ ସେତିକିବେଳେ ଏଇ ଉତ୍ସବ ହୁଏ । ସମସ୍ତଙ୍କ ମନ ଆନନ୍ଦରେ ପୂରି ଉଠେ । କାରଣ ବର୍ଷର ଏଇ ବେଳକୁ ଟାଣ ଖରା ନ ଥାଏ ବା ସନ୍ତସନ୍ତିଆ ପାଗ ନ ଥାଏ । ଅସଂଖ୍ୟ ପ୍ରକାର ପୋକଯୋକ କୀଟ ପତଙ୍ଗ ଆଉ ସାଲୁବାଲୁ ହେଉ ନ ଥାନ୍ତି ।

ଦୀପାବଳୀ ସାରା ଭାରତ ବର୍ଷର ବିଭିନ୍ନ ଅଞ୍ଚଳରେ ପାଳନ କରାଯାଏ । ପର୍ବର କେତେ ସପ୍ତାହ ଆଗରୁ ଲୋକମାନଙ୍କୁ ତର ନ ଥାଏ । ଘରଦ୍ୱାର ସଫାସୁତୁରା କରାଯାଏ, କାନ୍ଥରେ ଚୂନ ଲଗାଯାଏ । ଘରର ଆସବାବ ପତ୍ର ପରିଷ୍କାର କରାଯାଏ । ଘରର ଅନ୍ଧିସନ୍ଧିରୁ ଅଳିଆ ଅଳନ୍ଧୁ ସବୁ ଝାଡି ସଫା କରି ଦିଆଯାଏ । ପିଲାମାନଙ୍କ ପାଇଁ ନୂଆ ପୋଷାକ ତିଆରି କରାଯାଏ । ସୁଖଦାତ୍ରୀ ଓ ଧନଦାତ୍ରୀ ଦେବୀ ଲକ୍ଷ୍ମୀଙ୍କ ଉଦ୍ଦେଶ୍ୟରେ ଦୀପାବଳୀ ପାଳନ କରାଯାଏ ଏବଂ ଲୋକେ ବିଶ୍ୱାସ କରନ୍ତି ଯେ, ଯେଉଁ ଘର ସଫାସୁତୁରା ଓ ନିର୍ମଳ ଥାଏ, ସେଇ ଘରେ କେବଳ ଲକ୍ଷ୍ମୀ ବିଜେ ହୁଅନ୍ତି । ଦୀପାବଳୀର ଅନେକ ଦିନ ଆଗରୁ ଅଞ୍ଜୁ, ଶୋଭା ଓ ରାକେଶ ପ୍ରଭୃତି ପିଲାମାନଙ୍କର ମାଆ 'ରଙ୍ଗଲି' ତିଆରିଲ ପାଇଁ ଅବିର, ମିଠେଇ ତିଆରି କରିବା ପାଇଁ କିସ୍‌ମିସ୍, ଏବଂ ନୂଆ ଜାମାପଟା ପାଇଁ କପଡା କିଣି ରଖନ୍ତି । ଅନ୍ୟ ବର୍ଷ ଭଳି ଦୀପାବଳୀର ଉଦ୍ଦେଶ୍ୟ ସମ୍ପର୍କରେ ବୁଝାଇବାକୁ ଯାଇ ମାଆ କହନ୍ତି—'ତୁମେ ବଡ ହୋଇଗଲେ ଆଉ କେଉଁ ପର୍ବ ପାଳ ବା ନ ପାଳ, ଦୀପାବଳୀକୁ ଯେମିତି ନ ଭୁଲ, ସେଥିପାଇ ଶପଥ କରିବା ଉଚିତ ।'

ଟିକି ଅଞ୍ଜୁ କିଛି ନ ବୁଝିଲା ଭଳି ବଡ ବଡ ଆଖି କାଢି କହେ, 'ମା' ଲକ୍ଷ୍ମୀଙ୍କୁ କ'ଣ କିଏ ଦେଖିଛି ? ସେ କେବେ ଆମ ଘରକୁ ଆସିଛନ୍ତି ?' ତା'ର ମା' ମୁରୁକି ମୁରୁକି ହସି ଉତ୍ତର ଦିଅନ୍ତି, 'ଝିଅ, ଘରକୁ ଲକ୍ଷ୍ମୀ ଆସିଛନ୍ତି ବୋଲି ଆମେ ଯେତେବେଳେ କହୁ, ସେତେବେଳେ ପ୍ରକୃତରେ ବୁଝାଏ ଯେ, ସୁଖ ଓ ଧନ ସମ୍ପତ୍ତି ଆସିଛି । ଲୋକେ କହନ୍ତି ଯିଏ ଘରଦ୍ୱାର ସଫା ଓ ନିର୍ମଳ ରଖେ, ତା' ଘରକୁ ଲକ୍ଷ୍ମୀ ଆସନ୍ତି । ଯେଉଁମାନେ ଅଳସୁଆ ଲୋକ, କାମକୁ ଡରନ୍ତି ଏବଂ ଘରଦ୍ୱାର ସଫା ରଖିବା ପ୍ରତି ଦୃଷ୍ଟି ଦିଅନ୍ତି ନାହିଁ, ସେମାନେ କେବେ ଜୀବନରେ ଉନ୍ନତି କରି ପାରନ୍ତି ନାହିଁ । କିନ୍ତୁ ଯେଉଁ-

ମାନେ ଦୟାଳୁ ଲୋକ, ସବୁବେଳେ ହସ ହସ, ଲକ୍ଷ୍ମୀ ସେଇମାନଙ୍କ ଉପରେ ଆଶୀର୍ବାଦ ଅଜାଡ଼ି ଦିଅନ୍ତି । ଯେଉଁମାନେ ଗୋଳମାଳିଆ ଲୋକ, ସବୁବେଳେ ଅନ୍ୟର ଦୋଷ ଖୋଜନ୍ତି ଓ ପଛରେ ନିନ୍ଦା କରନ୍ତି, ସେମାନେ ଜୀବନରେ କେବେ ସଫଳ ହୁଅନ୍ତି ନାହିଁ ।'

ରାକେଶ କହିଲା, 'ଧନୀ ମହାଜନମାନଙ୍କ ଘରେ ଯେମିତି ବିଜୁଳିବତି ଜଳେ, ଆମେ ଏଥର ସେମିତି ବିଜୁଳିବତି ଜାଳିବା । ଦୀପାବଳୀରେ ତାଙ୍କ ଘର କେଡ଼େ ଉଜ୍ଜ୍ୱଳ ଆଉ ଝଲମଲ ଦେଖାଯାଏ ।'

ମାଆ କହିଲେ, ଅନେକ ଲୋକ ମହମବତୀ ମଧ୍ୟ ଜାଳନ୍ତି । ମୋତେ ଯଦି ପଚାରୁ, ତେବେ ମୁଁ କହିବି ଯେ; ଆମର ପୁରୁଣାକାଳିଆ ମାଟି ଦୀପ ଭଲ ।'

'ମା, ଆଈ କେତେଟା ବଳିତା ତିଆରି କରୁଛନ୍ତି ?' ଅଞ୍ଜୁ ପଚାରିଲା । 'ସେ ଅନେକଗୁଡ଼ିଏ ବଳିତା ତିଆରି କରିବେ । କାରଣ ଆମର ଅତି କମ୍‌ରେ ପାଖଶହ ଦୀପ ଦରକାର । ଘର କୋଣରେ କେଉଁଠି ଟିକିଏ ହେଲେ ଅନ୍ଧାର ରହିବା ଉଚିତ ନୁହେଁ ।' ମାଆ କହିଲେ ।

ଅଞ୍ଜୁ ପଚାରିଲା, 'ଲକ୍ଷ୍ମୀ କାହିଁକି ଅନ୍ୟ ଆଲୁଅ ଅପେକ୍ଷା ମାଟି ଦୀପକୁ ଭଲ ପାଆନ୍ତି ?'

ମାଆ କହିଲେ, 'ସତ୍ୟରେ ସେଭଳି ନୁହେଁ, ଆଗକାଳରେ ବିଜୁଳିବତି ନ ଥିଲା । ଏପରିକି ସେତେବେଳେ ମହମବତୀ ମଧ୍ୟ ନ ଥିଲା । ଲୋକମାନଙ୍କର କେବଳ ମାଟି ଦୀପ ଥିଲା । ଏବେ ମଧ୍ୟ ଅଧିକାଂଶ ଲୋକ ବିଶ୍ୱାସ କରନ୍ତି ଯେ, ମାଟି ଦୀପ ହେଉଛି ପବିତ୍ର ଏବଂ ଶୁଭ । ସେମାନେ ଘରର ବାହାର ପଟେ ବିଜୁଳି ଆଲୁଅ ଜାଳିଲେ ମଧ୍ୟ ପ୍ରାର୍ଥନା ପାଇଁ କେବଳ ମାଟି ଦୀପ ବ୍ୟବହାର କରନ୍ତି । ମାଟି ଦୀପକୁ ମୁଁ ଏଇଥିପାଇଁ ଭଲପାଏ ଯେ, ଏହାର କୋମଳ ଆଲୁଅ ଆଖିକୁ କଷ୍ଟ ଦିଏ ନାହିଁ । ଆଉ ମଧ୍ୟ ସେଗୁଡ଼ିକ ତିଆରି କରୁଥିବା ଗରିବ କୁମ୍ଭାର ବିଚରା ବର୍ଷରେ ଥରେ କିଛି ପଇସା ପାଇବ । କିନ୍ତୁ ବର୍ତ୍ତମାନ ତେଲର ଦାମ ଯାହା ହେଲାଣି, ସେଥିରେ କ୍ୱଚିତ ଲୋକ ମାଟି ଦୀପ ଜାଳି ପାରିବେ ।'

ପରିଶେଷରେ ଦିଆଲି ଦିନ ସକାଳ ହେଲା । ଏହିଦିନ ସକାଳୁ ପିଲାଙ୍କୁ ହଲାଇଲି କରି ଉଠାଇ ବିରକ୍ତ କରିବା ଦରକାର ହୁଏ ନାହିଁ । ସେମାନେ ଏଇ ଦିନଟିକୁ ଆଗ୍ରହରେ ଅପେକ୍ଷା କରି ରହିଥାଆନ୍ତି । ସକାଳ ଓଳିଟି ଆନନ୍ଦ କୋଳାହଳରେ ପୂରି ଉଠେ । ନୂଆ ଲୁଗାପଟା, ନାନାରଙ୍ଗର

କାଗଜ ଖୋଳରେ ଭର୍ତ୍ତି ମିଠେଇ, ପାଚେରୀ ଉପରେ ସଜାଯାଇଥିବା ଧାଡ଼ି ଧାଡ଼ି ଦୀପ ଏବଂ ହାବେଲି, ଫୁଲଝରି, ଘଡ଼ିବାଣ ଇତ୍ୟାଦି ନାନା ପ୍ରକାର ବାଣ—ଏ ସବୁରେ ଘରଟି ଉତ୍ସବ ମୁଖର ହୋଇ ଉଠେ । ଆଉ କେଉଁ ପର୍ବ ଏମିତି ଭାବରେ ପାଳନ କରାଯାଏ ?

ଶୋଭା ହେଉଛି ପରିବାରର ସବୁଠାରୁ ବଡ଼ ପିଲା । ସେ ଅଙ୍କନକୁ ଭଲ ପାଏ । ତେଣୁ ତା'ର ମାଆ ତାକୁ 'ରଙ୍ଗଲି' ଡିଜାଇନର ଦାୟିତ୍ୱରେ ଛାଡ଼ି ଦେଇଛନ୍ତି । ଅଞ୍ଜୁ ଆଉ ରାକେଶ କିଛି ଛାଡ଼ି କରି ଯିବାକୁ ରାଜି ନୁହଁନ୍ତି ।ସେମାନେ ବୁଢ଼ୀ ମା ପାଖରେ ବସି ତୁଳାକୁ ବଳି ବଳିତା ତିଆରି କରୁଛନ୍ତି ଏବଂ ବଡ଼ ଭଉଣୀକୁ ରଙ୍ଗଲି କାମରେ ସାହାଯ୍ୟ କରୁଛନ୍ତି । ରଙ୍ଗଲିର ଅର୍ଥ ହେଉଛି ଘରଚଟାଣରେ ନାନାରଙ୍ଗର ଅବିର ଓ ମୁରୁଜରେ ଚିତ୍ର ଲେଖିବା ।

ରାକେଶ ଏବଂ ତାର ମାଆ ଗୋଟିଏ କୁମ୍ଭରୁ ଶହ ସଂଖ୍ୟାରେ ମାଟି ଦୀପ ବାହାର କଲେ । ସେଥିରେ ତେଲ ଭରିବା ପରେ ଗୋଟିଏ ଲେଖାଏ ବଳିତା ପକାଇଲେ । ତା'ପରେ ସେଗୁଡ଼ିକ ନେଇ କାନ୍ଥ, ପାଚେରୀ, ବାରଣ୍ଡା ଓ ଘରର ସବୁଆଡ଼େ ଧାଡ଼ିକରି ସଜେଇ ରଖିଲେ । ବେଳ ବୁଡ଼ିଲା ମାତ୍ରେ ଏଗୁଡ଼ିକ ଲଗାଯିବାର କଥା, ତୁମେ ଯେତେବେଳେ ରାସ୍ତାରେ ଯାଉଥିବ, ଘରଗୁଡ଼ିକ ଅସଂଖ୍ୟ ଆଲୋକରେ ଝଲମଲ କରୁଥିବାର ଦେଖିବ । କି ଚମତ୍କାର ଦୃଶ୍ୟ । ଅକ୍ଟୋବର କିମ୍ବା ନଭେମ୍ବର ମାସରେ ଅମାବାସ୍ୟା ଦିନ ଦୀପାବଳୀ ପଡ଼େ । ପ୍ରକୃତି ଏହାକୁ ବର୍ଷରେ ସବୁଠୁ ଅନ୍ଧାରୁଆ ରାତି କରିଛି, କିନ୍ତୁ ମନୁଷ୍ୟ ଏହାକୁ ଆଲୋକମୟ କରିଛି ।

ବତି ଜାଳି ଲକ୍ଷ୍ମୀଠାକୁରାଣୀଙ୍କୁ ଅର୍ଘ୍ୟ ଦିଆଯାଏ । ତା' ପୂର୍ବରୁ ପୂଜା ସ୍ଥାନଟିକୁ ଯତ୍ନର ସହିତ ପରିଷ୍କାର ପରିଚ୍ଛନ୍ନ କରାଯାଇଥାଏ । ଚଟାଣରେ ଚିତ୍ର ଅଙ୍କା ଯାଇଥାଏ । ଠାକୁରଙ୍କୁ ଫୁଲ, ଫଳ ଓ ମିଠା ଇତ୍ୟାଦି ଦିଆଯାଏ । ପିଲାମାନଙ୍କ ମଧ୍ୟରେ ପ୍ରସାଦ ବାଣ୍ଟାଯାଏ । ଅଳ୍ପଥରେ ପୂଜା ପାଇଥିବା ଲକ୍ଷ୍ମୀ ଏବଂ ଗଣେଶଙ୍କର ମାଟି ମୂର୍ତ୍ତିକୁ ପରେ ସହରର ପ୍ରଧାନ ପ୍ରଧାନ ରାସ୍ତାରେ ଶୋଭାଯାତ୍ରାରେ ନେଇ ପୂଜା କରାଯାଏ ।

ପ୍ରାର୍ଥନା ଶେଷରେ ବାଣ ଫୁଟାଇବାକୁ ପିଲାମାନଙ୍କୁ ମନା ନାହିଁ, ଦୀପାବଳୀର କେତେଦିନ ଆଗରୁ ସେମାନେ ବାଣଫୁଟା ଆରମ୍ଭ କରି ଦେଇ ଥାଆନ୍ତି । ହୋ- ହା ଶବ୍ଦକୁ ପିଲାମାନଙ୍କର ବାପା ମାଆ ପସନ୍ଦ ନ କଲେ ମଧ୍ୟ ରାକେଶ ଏ ସବୁକୁ ଭାରି ଭଲ ପାଏ ଏବଂ ସବୁଆଡ଼େ ବାଣ ଫୁଟାଇ ହୋ-ହା କରୁଥାଏ । ହାବେଲି ବାଣ ଅନ୍ଧାରରେ ଆକାଶକୁ ଉଡ଼ିଯାଏ

ଏବଂ ତାହା ସେଠାରେ ହଜାର ହଜାର ତାରା ଫୁଟାଇ ଜଳେ । ବେଳେ ବେଳେ ଏଥିରେ ଅନେକ ବିପଜ୍ଜନକ ଦୁର୍ଘଟଣା ମଧ୍ୟ ଘଟେ ।

ପିଲମାନେ ମିଠେଇ ପ୍ୟାକେଟ ବାଣ୍ଟିବାକୁ ଭଲ ପାଆନ୍ତି ।ଦୀପାବଳୀ ଶୁଭେଚ୍ଛା ଜଣାଇବା ପାଇଁ ସେମାନେ ଯାହା ଘରକୁ ଯାଆନ୍ତି, ସେଠାରେ ତାଙ୍କୁ ମିଠେଇ ଦିଆଯାଏ । ସେମାନେ ଏତେ ମିଠେଇ ଖାଆନ୍ତି ଯେ, ଦୀପାବଳୀ ପରେ କେତେ ମାସ ପର୍ଯ୍ୟନ୍ତ ମିଠେଇ ଆଡେ ଆଉ ଅନେଇବାକୁ ଇଚ୍ଛା କରନ୍ତି ନାହିଁ ।

ଦୀପାବଳୀ ପଛରେ ଗୋଟିଏ କିମ୍ବଦନ୍ତୀ ଅଛି । ରାମ, ଲକ୍ଷ୍ମଣ, ସୀତା ଓ ହନୁମାନ ଯେତେବେଳେ ଲଙ୍କାର ରାଜା ରାବଣକୁ ପରାଜିତ କରି ବିଜୟ ଆନନ୍ଦରେ ଅଯୋଧ୍ୟାକୁ ଫେରି ଆସିଥିଲେ, ସେତେବେଳେ ପ୍ରଥମ କରି ଅଯୋଧ୍ୟାରେ ଦୀପାବଳୀ ଉତ୍ସବ ପାଳନ କରାଯାଇଥିଲା । ଅଯୋଧ୍ୟାର ବାସିନ୍ଦାମାନେ ଘିଅ ଦୀପ ଜାଳିଥିଲେ ଓ ପୂରା ଗୋଟିଏ ଦିନ ଏବଂ ଗୋଟିଏ ରାତି ମଉଜ ମଜଲିସରେ କଟାଇଥିଲେ । ସେହିଦିନ ଠାରୁ ଲୋକମାନେ ସମାନ ଆଗ୍ରହରେ ଦୀପ ଜାଳି ରାମଚନ୍ଦ୍ରଙ୍କର ବିଜୟ ଉତ୍ସବ ପାଳନ କରି ଆସୁଛନ୍ତି ।ବର୍ଷର ସବୁଠାରୁ ଅନ୍ଧକାର ରାତିକୁ ଆଲୋକମୟ କରି ଅସତ୍ୟର ଅନ୍ଧକାର ମଧ୍ୟରେ ସତ୍ୟ ରୂପକ ଆଲୋକର ଜୟ ତଥା ଦୁଷ୍ଟ, ଅମଙ୍ଗଳ ଓ ଅଜ୍ଞତା ରୂପକ ଅନ୍ଧକାର ମଧ୍ୟରେ ଜ୍ଞାନାଲୋକର ଜୟ ବୋଲି ଧରାଯାଏ । ଅସୁମାର ଆଲୋକର ଝଲକ, ହସ ଖୁସି ଓ ଆନନ୍ଦ ଉଲ୍ଲାସ ମଧ୍ୟରେ ଦୀପାବଳୀ ଉତ୍ସବର ବାର୍ତ୍ତା ହିଁ ପ୍ରକାଶିତ ହୋଇଥାଏ ।

ଦୀପାବଳୀ ହେଉଛି ଗୋଟିଏ ହିନ୍ଦୁ ପର୍ବ, ବିଶେଷକରି ବ୍ୟବସାୟୀ ମାନଙ୍କର ।ତାଙ୍କ ପାଇଁ ଏଇଠୁ ନୂଆ ବର୍ଷ ଆରମ୍ଭ ହୁଏ ଏବଂ ସେମାନେ ତାଙ୍କ ଦୋକାନରେ ନୂଆ ହିସାବ ଖାତା ଖୋଲନ୍ତି ।କିନ୍ତୁ ଆଜିକାଲି କୌଣସି ପର୍ବ ଆଉ କାହାରି ଏକଚାଟିଆ ହୋଇ ରହି ନାହିଁ । ସବୁ ଶ୍ରେଣୀ, ସବୁ ସଂପ୍ରଦାୟର ଲୋକେ ତାକୁ ପାଳୁଛନ୍ତି,ଦୀପାବଳୀ ଦିନ ଅଞ୍ଜୁଙ୍କ ଘର ସାମ-ନାରେ ରହୁଥିବା ଗୋଟିଏ ବିଦେଶୀ ପରିବାର ଦୀପ ଜଳେଇଥିଲେ । 'ଇଦ୍' ଦିନ ସେ ନିଜେ ତା'ର ମୁସଲମାନ ସାଙ୍ଗ ସାଲମା ଓ ହାସାନଙ୍କ ଘରୁ ସିମେଇ ହାଲୁଆ ପାଇଥିଲା । ତା' ବଦଳରେ ଅଞ୍ଜୁ ଆଜି ତାଙ୍କ ଘରକୁ ମିଠେଇ ପଠାଇବ ।

ଅଞ୍ଜୁ ଗୋଟିଏ ଫୁଲଝରି ଲଗାଇଲା । ରାକେଶ ଗୋଟିଏ ହାଉଇ ଛାଡିଲା ଏବଂ ବମ-ବାଣ ଫୁଟାଇଲା । ପଡିଶା ଘରର କେତେକ ଗରିବ ପିଲା ଠିଆ ହୋଇ ଏ ସବୁ ଦେଖୁଥିଲେ । ସେମାନେ ନିଜ ପାଇଁ କିଛି ବାଣ

କିଣି ପାରି ନ ଥିଲେ । ଅଞ୍ଜୁର ମାଆ ଗୋଟିଏ ଫୁଲଝରି ପ୍ୟାକେଟ ତାଙ୍କ ଝିଅକୁ ଦେଇ କହିଲେ—'ଏଇଟି ନେଇ ସେମାନଙ୍କୁ ଦେ ।' ତା'ପରେ ସେ ଘରୁ କିଛି ମିଠେଇ ଆଣି ସେମାନଙ୍କୁ ଦେଲେ । ମିଠେଇ ଦେଖି ପିଲା-ମାନଙ୍କର ମୁହଁ ଉଜ୍ଜ୍ୱଳ ଦେଖାଗଲା ।

ଏଇ ହେଉଛି ଦୀପାବଳୀର ଅସଲ ଉଦ୍ଦେଶ୍ୟ । ଗୁଡାଏ ବାଣ ଫୁଟାଇ ହୋ-ହା କରିବା ଅପେକ୍ଷା ଲୋକମାନଙ୍କ ମୁହଁରେ ହସ ଫୁଟାଇବାରେ ଏବଂ ସେମାନଙ୍କୁ ଖୁସି କରିବାରେ ଅଧିକ ଆନନ୍ଦ ଥାଏ ।

ମୂଳ ହିନ୍ଦୀଲେଖା : ଇନ୍ଦିରା ନୂପୁର



# ବଡଦିନ

'ବଡ ଦିନର ଉପହାର କଥାଟା ବିଲକୁଲ ବାଜେ ।' ନୀଲୁ ଖୁବ୍ ଯୋରରେ ଏଇ କଥାଟା ଥଟ୍ଟା କରି କହିଲା ।

'ଆଜି ରାତିର ତାରାଗୁଡିକ କେତେ ଉଜ୍ଜ୍ୱଳ ।' ତା'ର ଭଉଣୀ ରଣା ଝରକା କାଚ ଉପରେ ନାକକୁ ମାଡି କହିଲା । 'ମୋତେ ଜଣାପଡୁଛି, ମୋ ହାତ ଦୁଇଟା ଯଦି ହଜାରେ ମାଇଲ ଲମ୍ବ ହୋଇଥାଆନ୍ତା, ତେବେ ସତେ ଯେମିତି ମୁଁ ସେଗୁଡିକୁ ଛୁଇଁ ଦିଅନ୍ତି ।

ନୀଲୁ ଘୁମୁରି ଉଠିଲା—'ଆଃ, ତୁ ସତରେ ଗୋଟାଏ ବୋକୀ ।' ଗୋଡର ବୁଢା ଆଙ୍ଗୁଠିରେ ସେ ସୁଇଚ୍‌ଟାକୁ ଠେକି ଦେଇ ଘରଟାକୁ ଅନ୍ଧାର କରି ଦେଲା । ରଣୀ ତା'ର ଉଷୁମ ରେଜେଇ ତଳେ ଯାକିଯୁକି ହୋଇ ଶୋଇଗଲା । ଅନୁମାନ କର, ଏଇଟା ଥିଲା, ବଡଦିନ ବା ଖ୍ରୀଷ୍ଟମାସର ପୂର୍ବ ଦିନ ରାତି । ତା'ର ସାଙ୍ଗ ବୀଣା ଯେଉଁ ଛୋଟ ସହରରେ ରହେ, ଥରେ ତା' ସହିତ'ସେ କେମିତି ବଡଦିନ କଟାଇଥିଲା, ସେ କଥା ରଣୀ ଭାବିବାକୁ ଲାଗିଲା । ବୀଣାର ବାପା ଥିଲେ ଜଣେ ଧର୍ମଯାଜକ ଏବଂ ସେ ରଣୀକୁ କହିଥିଲେ ଯେ, ବଡଦିନ ହେଉଛି ଯୀଶୁ ଖ୍ରୀଷ୍ଟଙ୍କର ଜନ୍ମଦିନ ପର୍ବ ।

ଡିସେମ୍ବର ୨୪ ତାରିଖ ଦିନ ସେମାନେ ଛୋଟ ଗିର୍ଜାଟିକୁ ସଜେଇ-ଥିଲେ ଏବଂ ପରଦିନ ଆଖପାଖ ଗାଆଁର ଲୋକମାନଙ୍କୁ ସମ୍ବର୍ଦ୍ଧନା କରି-ବାକୁ ଗୋଟିଏ ଚକ୍‌ମକ୍ ରଙ୍ଗୁଆ ଟଙ୍ଗା ଯାଉଥିଲା । ଗ୍ରାମବାସୀମାନେ ଢୋଲକ ବାଜାର ଚିତ୍ତାକର୍ଷକ ତାଳ ସହିତ ଅଦ୍ଭୁତ ବଡଦିନ ଭଜନ ଗାଇ ଗାଇ ଦଳ ଦଳ ହୋଇ ଆସୁଥିଲେ ଏବଂ ସେଦିନ ରାତିରେ ରଣୀ କିମ୍ବା ବୀଣା କାହାରି ଆଖିରେ ନିଦ ନ ଥିଲା । ସକାଳ ହେଲା ବେଳକୁ ପାଦ୍ରୀ ବା ଗିର୍ଜାର ପୁରୋହିତଙ୍କ ଦୁଆର ମୁହଁରେ ପାହାଡ ଆକାରର ଯୋତା ଜମା ହୋଇଯାଇଥିଲା । ପରେ ପରେ ଗ୍ରାମବାସୀମାନେ ମୋଟା ସୂତା ଚଦର ଘୋଡି ହୋଇ, ଗରମ ଚା' ଗିଲାସେ ଲେଖାଁ ପିଇ ଏବଂ ଚିନାବାଦାମ ଚୋବେଇ ଚୋବେଇ ସେଠାରେ ଆସି ଭର୍ତ୍ତି ହୋଇଗଲେ ।

ଖ୍ରୀଷ୍ଟମାସ ଦିନ ଗୀତ ଗାଇ ଗାଇ ଯାଉଥିବା ସେଇ ଗ୍ରାମବାସୀ-ମାନଙ୍କ ଗହଣରେ ବୀଣାର ପରିବାର ସହିତ ରଣୀ ସହରର ଅଣ ଓସାରିଆ ରାସ୍ତାରେ ଚାଲି ଚାଲି ଗଲା । ଜୀବନରେ ପ୍ରଥମ ଥର ପାଇଁ ରଣୀ ସେଦିନ ଗିର୍ଜା ଚଟାଣରେ ବସି ପ୍ରାର୍ଥନାରେ ଯୋଗ ଦେଲା । ଗ୍ରାମବାସୀମାନେ ଗରିବ

ଲୋକଙ୍କ ନିମନ୍ତେ ବେଦି ଉପରେ ରଖିବା ପାଇଁ ଛୋଟ ଛୋଟ ଉପହାର-ମାନ ଆଣିଥିଲେ । ଗିର୍ଜା କାମ ପରେ ବିରାଟ ବଡ଼ଦିନ ମେଳା । ଗିର୍ଜା ହତା ଭିତରେ ମୀନାବଜାର । କାଠର ଚକ୍ରୀ ଘଡ ଘଡ ଶବ୍ଦ କରୁଥାଏ, ବଢ଼ିଆ ବଢ଼ିଆ ଖାଦ୍ୟ ଜିନିଷ କାଠ ଚୂଲିରେ ତିଆରି କରି ରଖାଯାଇଥାଏ ଏବଂ ସବୁଠୁଁ ମଜା ହେଉଛି ପିଲମାନଙ୍କୁ ପାଦ୍ରୀ ଏବଂ ତାଙ୍କ ସ୍ତ୍ରୀ ଉପହାର ବାଣ୍ଟୁଥାଆନ୍ତି ।

ଏଠା ଅପେକ୍ଷା ଗାଆଁରେ କିନ୍ତୁ ବଡ଼ଦିନ ଉତ୍ସବ ଆହୁରି ମଜା । ରଣୀର ଇଚ୍ଛା ହେଉଥିଲା ଏ ବିଷୟରେ ସେ ଆଉ କିଛି ଅଧିକ ଜାଣି-ଥାଆନ୍ତା । ଏତିକିବେଳେ ଝରକାରେ ଖଟ ଖଟ ଶବ୍ଦ ହେବାରୁ ରଣୀର ଆଖି ବୁଜି ହୋଇଗଲା ।

ସେ ଭୁସ୍‌କରି ଉଠିପଡ଼ିଲା । ଝରକାରେ କ'ଣ ଗୋଟାଏ ଖଟ ଖଟ ଶବ୍ଦ ହେଲା ? ସେ ଚୁପଚାପ ବସି ରହିଲା, ଟିକିଏ ବି ହଲଚଲ ହେବାକୁ ତା'ର ସାହାସ ନ ଥିଲା । କିଏ ହୋଇପାରେ ? ରକ୍ତ ତା'ର ଯେମିତି ପାଣି ପାଲଟି ଆସୁଥିଲା । ଭୟଙ୍କର ଉଡ଼ା ରାକ୍ଷସ ଯେମିତି ଝରକା ବାହାରେ ତାର ଥାଟ ସଜାଡୁଛି...

ପୁଣି ସେଇ ଖଟ୍ ଖଟ୍ ଶବ୍ଦ ।

ରଣୀ ଫୁସ୍ ଫୁସ କରି ଡାକିଲା—'ନୀଲୁ ।'

ନୀଲୁ କିନ୍ତୁ ନିଦରେ ଘୁଙ୍ଗୁଡ଼ି ମାରୁଥାଏ ।

ରଣୀ ଦେଖିଲା, ବନ୍ଦ ଥିବା ଝରକା ଧୀରେ ଧୀରେ ଖୋଲିଗଲା ଏବଂ ପୁଣି ବନ୍ଦ ହୋଇଗଲା । ଗୋଟିଏ ଗୋଲାକର ଟିକି ମଣିଷ, ହାତେ ଉଚ୍ଚରୁ ବେଶି ହେବ ନାହିଁ, ଝରକାର ଚଉକାଠ ପାଖରେ ରାଗରେ ଫଁ-ଫଁ ହେଉ-ଥିଲା । ତା' ପାଖରେ ବଢ଼ିଆ ବଢ଼ିଆ ଜିନିଷରେ ଭର୍ତ୍ତି ହୋଇଥିବା ଗୋଟିଏ ବ୍ୟାଗ ଥିଲା । ତା' ଭିତରୁ ଖେଳନା-ରେଳଗାଡ଼ିଟିଏ ବାହାରକୁ ଉଙ୍କି ମାରୁଥିଲା ।

'ଭାଙ୍ଗି ଦିଅ ଏ ଟିକି ଘର ଗୁଡ଼ାକ'—ଲୋକଟା ନିଜର ଭଲ ପଣିଆ ଦେଖାଇ ଗାଳି ଦେଲା । 'ମୋ ସ୍ଲେଜଗାଡ଼ି ଓହ୍ଲାଇବାକୁ ଜାଗା ନାହିଁ, ଭିତରେ ପଶିବାକୁ ଚିମନି ନାହିଁ । ଖାଲି ଘର ଉପରେ ଘର ଏବଂ ସବା ଉପରେ ବାଟ ଓଗିଛି ଟି. ଭି. ଆଣ୍ଟିନା ।'

ଟିକି ମଣିଷଟିର ମଧୁରିଆ ହସରେ ରଣୀର ଡର ଛାଡ଼ିଗଲା । ସେ କହିଲା—''କ୍ଷମା କରିବେ । ଆପଣ କ'ଣ ସାଣ୍ଟା କ୍ଲଜ ?'

'ସାବାସ, ଆଉ କିଏ ବୋଲି ତୁ ଭାବିଲୁ ? କ'ଣ ଉଡ଼ା ରାକ୍ଷସ ?'

ରାଣୀ ଓଠ ଚାପି ଚାପି ହସିଲା । ସେ କହିଲା—'ମୁଁ ଟିକେ ଖାଲି ନୀଲୁକୁ ଉଠାଇ ଦିଏ । ନ ହେଲେ ମୋ କଥା ସେ ମୋଟେ ବିଶ୍ୱାସ କରିବ ନାହିଁ ।'

'ସେ କଥା ହେବ ନାହିଁ ।' —ସାନ୍ତା କହିଲେ ।

ରାଣୀ ଆଶ୍ଚର୍ଯ୍ୟ ହୋଇ ପଚାରିଲା—'କାହିଁକି ?'

'କାରଣ ସେ ମୋତେ କେବେ ଦେଖି ପାରିବ ନାହିଁ । ମୋ ଉପରେ ତ ତା'ର ବିଶ୍ୱାସ ନାହିଁ । ଆଉ ସମୟ ନଷ୍ଟ କର ନାହିଁ । ବଡଦିନ ସମ୍ପର୍କରେ ମୁଁ ତୋର ପ୍ରଶ୍ନର ଉତ୍ତର ଦେବାକୁ ଆସିଛି । ସକାଳ ହେବା ପୂର୍ବରୁ ମୋତେ ପୃଥିବୀ ସାରା ବୁଲି ଆସିବାକୁ ହେବ । ତେଣୁ ଜଲ୍‌ଦି—।' ଟିକି ମଣିଷଟି ତା'ର ଚକ୍ ଚକ୍ କଳା ଯୋତା ସହିତ ମୋଟା ମୋଟା ଗୋଡ ଦୁଇଟାକୁ ଝରକାର ଚଉକାଠ ଉପରେ ଝୁଲାଇ ବସି ପଡିଲା ।

ରାଣୀ ଉତ୍କଣ୍ଠିତା ହୋଇ କହିଲା—'ମୋତେ ବର୍ତ୍ତମାନ କୁହ ତୁମେ ପ୍ରକୃତରେ କିଏ ?'

'ଠିକ ଅଛି ।'—ସାନ୍ତା ତାଙ୍କର ବରଫ ଭଳି ଧଳା ଦାଢିକୁ ସାଉଁଳି କରି କହିଲେ—'ପ୍ରକୃତ ସାନ୍ତା ପ୍ରାଚୀନ ତୁର୍କୀର ମିରା ନାମକ ଏକ ବନ୍ଦର ନଗରୀରେ ବାସ କରୁଥିଲେ । ସେତେବେଳେ ଏ ସ୍ଥାନଟି ଥିଲା ଏସିଆ ମାଇନର । ତାଙ୍କର ନାମ ଥିଲା ନିକୋଲାସ ।'

ରାଣୀ କହିଲା—'ବରାବର ମୁଁ ଭାବୁ ଥିଲି ଯେ, ସାନ୍ତା ଗୋଟିଏ ଇଉରୋପୀୟ ପରୀ କାହାଣୀର ନାଆଁ । ମୁଁ କେବେ ଜାଣି ନ ଥିଲି ଯେ, ସେ ତୁର୍କୀର ଜଣେ ବାସିନ୍ଦା ଥିଲେ ।'

ସାନ୍ତା କହି ଚାଲିଲେ—'ସମ୍ରାଟ ଡିଓକ୍ଲେସିଆନ ନିକୋଲାସଙ୍କୁ ବନ୍ଦୀ କରିଥିଲେ । କାରଣ ନିକୋଲାସ ଅନ୍ୟମାନଙ୍କ ଭଳି ଡିଆନା ଠାକୁରାଣୀଙ୍କୁ ପୂଜା ନ କରି ଯୀଶୁଙ୍କୁ ବିଶ୍ୱାସ କରୁ ଥିଲେ । ପରେ ଯେତେବେଳେ ସମ୍ରାଟ କନଷ୍ଟାଣ୍ଟାଇନ ସିଂହାସନ ଆରୋହଣ କଲେ ଏବଂ ଖ୍ରୀଷ୍ଟଧର୍ମକୁ ତାଙ୍କ ରାଜ୍ୟର ଧର୍ମ ରୂପେ ଗ୍ରହଣ କରି ନେଲେ ନିକୋଲାସ ବନ୍ଦିଶାଳାରୁ ମୁକ୍ତ ହେଲେ । ସେ ହେଲେ ଜଣେ ବିଶପ୍ । ସେ ମିରା ସହରର ଚାରିଆଡେ ଛଦ୍ମ ବେଶରେ ବୁଲୁଥିଲେ ଏବଂ ଅଭାବ ଅସୁବିଧାରେ ପଡିଥିବା ଲୋକମାନଙ୍କୁ କିପରି ସାହାଯ୍ୟ କରି ପାରିବେ ତାର ଉପାୟ ଚିନ୍ତା କରୁଥିଲେ । ଥରେ ଜଣେ ଗରିବ ବିଧବା ସହିତ ତାଙ୍କର ଭେଟ ହେଲା । ବିଧବାର ତିନୋଟି ଛୋଟ ପୁଅଙ୍କୁ ଜଣେ ହୋଟଲ ମାଲିକ ହତ୍ୟାକରି ଆଚାର ହାଣ୍ଡିରେ ଲୁଚାଇ ରଖିଥିଲା । ଦୟାଳୁ ବିଶପ ସେମାନଙ୍କ ପାଇଁ ପ୍ରାର୍ଥନା କଲେ ଏବଂ ପିଲା

ତିନୋଟି ଜୀବନ ଫେରି ପାଇଲେ । ତେଣୁ ବିଶପ ନିକୋଲାସ ଏଣିକି ସବୁ ପିଲାଙ୍କର ହେଲେ ଜଣେ ପରମ ବନ୍ଧୁ । ନିକୋଲାସଙ୍କର ମୃତ୍ୟୁପରେ ତାଙ୍କୁ ଜଣେ ସେଣ୍ଟ ବା ମହାପୁରୁଷ ବୋଲି କହିବାକୁ ଗିର୍ଜା ନିଷ୍ପତ୍ତି କଲା । ମହାତ୍ମା ନିକୋଲାସଙ୍କୁ ପୃଥିବୀର ଭିନ୍ନ ଭିନ୍ନ ଦେଶ ଭିନ୍ନ ଭିନ୍ନ ନାଆଁ ଦେଇ ଏବଂ ତାଙ୍କ କଥାକୁ ଅଦଳ ବଦଳ କରି ନିଜର କରି ନେଲେ । 'ସେଣ୍ଟ ନିକୋଲାସ' ଓ ସାନ୍ତା କ୍ଲଜ- ଦୁଇଟା ଯାକ ନାଆଁ ତୋତେ ପ୍ରାୟ ଏକାଭଳି ଶୁଭୁନାହିଁ ?'

'ଭଲ କଥାତ । ରାଣୀର ଆଖି ଖୋଲିଗଲା । ଦି'ଟା ଯାକ ନାଆଁ ତ ଏକା ଭଳିଆ ଶୁଭୁଛି ।'

'କିନ୍ତୁ ତୁମ କଥା କଅଣ ? ରାଣୀ ଦୁଇ ଆଣ୍ଠୁକୁ ଯୋଡି ବସି ପୁଣି ପଚାରିଲା, ତୁମେ ଜଣେ ମହାତ୍ମା ବୋଲି କୁହ ନାହିଁ ।'

ସାନ୍ତା ହସିଲେ ଏବଂ ନିଜ ଜଙ୍ଘକୁ ଥାପୁଡେଇ କହିଲେ—'ମହାତ୍ମା ।' ତା ପରେ ସେ ହେଁ ହେଁ ହୋଇ ହସି ଉଠିଲେ । 'ତୋ ମନରେ ମୁଁ ହେଉଛି କିଛି ଗୋଟିଏ ଛୋଟିଆ କଥା, ମୁଁ ବଡଦିନ ପାଖା ପାଖି ଆସେ । କାରଣ ମୁଁ ସେତେବେଳେ ଜୀବନ ପାଇ ଆସିବାକୁ ତୁ ଇଚ୍ଛାକରୁ ତା'ପରେ ମୁଁ ବାରଟି ଦ୍ରୁତଗାମୀ ବଲ୍‌ଗା ହରିଣ ଯୋଚୁଥିବା ସ୍ଲେଜ ଗାଡିରେ ବସି ସବୁ ଆଡର ପିଲାଙ୍କୁ ବଢିଆ ବଢିଆ ଉପହାର ବାଣ୍ଟିବାକୁ ବାହାରିଯାଏ । ଆମର ପ୍ରକୃତ କାମ ହେବା ଉଚିତ, ପ୍ରତ୍ୟେକ ପରିବାର ପରସ୍ପରକୁ ସ୍ନେହ କରିବାରେ ସାହାଯ୍ୟ କରିବା । ପ୍ରକୃତରେ ମୋ ଦିନଟି ଡିସେମ୍ବର ୬ ତାରିଖ; କିନ୍ତୁ ବଡ ଦିନ ପୂର୍ବରାତିରେ କାମ କରିବାକୁ ମୁଁ ଭଲପାଏ । ଆଉ ସବୁ ଭଲଦିନ ବିଷୟରେ କହିବାକୁ ଗଲେ, ନବ ବର୍ଷ ଦିବସଟି ଯେ ପ୍ରାଚୀନ ରୋମାନମାନଙ୍କ ଠାରୁ ଆସିଛି, ଏ କଥା ତୁ ଜାଣିଛୁ ? ପୃଥିବୀର ବିଭିନ୍ନ ଅଞ୍ଚଳରେ ନବବର୍ଷ ଦିନଟି ବସନ୍ତ ଋତୁରେ ପାଳନ କରା ଯାଉଥିଲା କିନ୍ତୁ ଜୁଲିଅସ ସିଜର ଏହାକୁ ଜାନୁଆରୀ ମାସକୁ ଘୁଞ୍ଚାଇ ଦେଇଥିଲେ । କାରଣ ଜାନୁଆରୀ ଜାନୁସ, ଦେବତାଙ୍କ ନାମ ଅନୁସାରେ ନାମିତ ହୋଇଛି ଏବଂ ଗଣେଶଙ୍କ ଭଳି ଅନୁକୂଳ ଦେବତା ଅଟନ୍ତି । ଏଇଭଳି ଭାବରେ ଜାନୁଆରୀ ଏକ ତାରିଖଟିକୁ ନବବର୍ଷ ଦିବସ ବା ଜାନୁସ ଦେବତାଙ୍କ ପର୍ବ ବୋଲି ଘୋଷଣା କରାଗଲା ।'

ରାଣୀ ଆଶ୍ଚର୍ଯ୍ୟ ହେଲା 'ମୋର ସତେ କେତେ କମ୍ ଜ୍ଞାନ । ଆଚ୍ଛା, ବଡଦିନ ଗଛ, ବିଷୟଟି କ'ଣ କୁହ ।'

ସାନ୍ତାକହିଲେ—'ବୁଝିଲ ଝିଅ, ପୃଥିବୀର ପ୍ରାଚୀନ ଧର୍ମମାନଙ୍କରେ

ଗଛ ସବୁବେଳେ ଗୁରୁତ୍ୱପୂର୍ଣ୍ଣ ବୋଲି ଗ୍ରହଣ କରାଯାଇଛି । ବଡଦିନ ଗଛ ସଂପର୍କରେ ମଧ୍ୟ ଅନେକ କାହାଣୀ ଅଛି । ବହୁ ପୂର୍ବ କାଳରେ, ପିଲାମାନଙ୍କୁ ଧରିନେଇ ଠାକୁରଙ୍କ ଆଗରେ ବଳି ଦିଆ ଯାଉଥିଲା ଉଇନଫ୍ରେଡ ନାମକ ଜଣେ ଇଂରେଜ ଖ୍ରୀଷ୍ଟିଆନ ଉତ୍ତର-ଜର୍ମାନୀର ଜଙ୍ଗଲ ଭିତରେ ବୁଲୁଥିଲେ । ଅକସ୍ମାତ ଗୋଟିଏ ବିରାଟ ଓକ୍ ଗଛ ତାଙ୍କ ନଜରରେ ପଡିଲା । ସେଇ ଗଛରେ ଛୋଟ ରାଜକୁମାର ଆସଲଫ୍ ବନ୍ଧା ହୋଇଥିଲେ । ବଜ୍ର ଦେବତା 'ଥୋର'ଙ୍କୁ ସନ୍ତୁଷ୍ଟ କରିବା ପାଇଁ ଆସଲଫଙ୍କୁ ବଳି ଦିଆଯାଉ ଥାଆନ୍ତା ।ଉଇନଫ୍ରେଡ ଧାଇଁଯାଇ ସେଇ ବିରାଟ ଓକ୍ ଗଛଟାକୁ କାଟି ଗଡ଼ାଇ ଦେଲେ ଏବଂ ପିଲାଟିକୁ ଉଦ୍ଧାର କଲେ । ଥୋରଙ୍କର ପୂଜକ ଉଇନଫ୍ରେଡଙ୍କୁ ହାଣି ଦେଇ ଥାଆନ୍ତା, କିନ୍ତୁ ହଠାତ ଏକ ବିଚିତ୍ର ଘଟଣା ସେଠାରେ ଘଟିଗଲା । ଗୋଟିଏ ଛୋଟ 'ଫାର୍' ଗଛ ଚାହୁଁ ଚାହୁଁ ସେଇ ଓକ୍ ଗଛ ସ୍ଥାନରେ ଗଜୁରି ଉଠିଲା । ସେଠାରେ ଆଶ୍ଚର୍ଯ୍ୟରେ ଚାହିଁ ରହିଥିବା ଲୋକମାନଙ୍କୁ ଉଇନଫ୍ରେଡ କହିଲେ ଯେ ସେଇଟି ହେଉଛି ଜୀବନ ବୃକ୍ଷ ଏବଂ ତାହା ବାଳକ ଯୀଶୁଙ୍କର ପ୍ରତୀକ । ଏହାର ଅନେକ ଦିନ ପରେ ଜଣେ ଜର୍ମାନୀ ଧର୍ମଯାଜକ ମାର୍ଟିନ ଲୁଥର 'ବଡ ଦିନ ବୃକ୍ଷ' ଉପରେ ବତି ଜଳାଇଥିଲେ ବୋଲି କୁହାଯାଏ ।

ବଡ ଦିନ ବୃକ୍ଷର ଜନ୍ମ ଯେମିତି ହୋଇଥାଉନା କାହିଁକି, ଏହାର ଉଦ୍ଦେଶ୍ୟ ହେଉଛି, ଲୋକମାନଙ୍କୁ ସାହାଯ୍ୟ କରିବା, ନିଃସ୍ୱାର୍ଥପର ହେବା ଏବଂ ଅନ୍ୟମାନଙ୍କୁ ଦାନ କରିବା । ତୁମେ ଏହାକୁ ଗୋଟିଏ ଦାନୀ ଗଛ ବୋଲି କହି ପାର ।

ରାଣୀ ଏଭଳି ମନଯୋଗ ଦେଇ ଏସବୁ କଥା ଶୁଣୁଥିଲା ଯେ, ନୀଲୁର ଘଡି କେତେବେଳେ ଟେବୁଲ ଉପରୁ ନାଚି ନାଚି ତଳେ ଖସିପଡି ପାଗଳଙ୍କ ଭଳି ଡେଇଁ ଡେଇଁ ଗୀତ ଗାଉଥିଲା, ତା'ର ଧ୍ୟାନ ନ ଥିଲା । ସେ ଗାଉଥିଲା, 'ବାରଟା ବାଜିଲା, ବାରଟା ବାଜିଲା ।'

ସାଣ୍ଟା ବ୍ୟସ୍ତ ହୋଇ ଉଠି ପଡିଲେ ଏବଂ ନୀଲୁର ଟେବୁଲ ଉପରେ ଗୋଟିଏ ମାଟିଆ ରଙ୍ଗର ପୁଡିଆ ଥୋଇ ଦେଲେ । ସେ ତାଙ୍କ ଥଳିଟିକୁ ଗୋଟାଇ ନେଇ ରାଣୀକୁ ଟିକିଏ ଟେରେଇ ଟେରେଇ ଚାହିଁଲେ ଏବଂ କହିଲେ—'ମୋର ବହୁତ କାମ । ମୁଁ ଯାଏଁ । ମୁଁ ସତ ନ ହେଲେ ମଧ୍ୟ ମୋତେ ଭୁଲିବୁ ନାହିଁ । ମୁଁ ଗୋଟିଏ କୌତୁକ । ତୋର ଯେତେବେଳେ ଇଚ୍ଛା ହେବ ଏମିତି ଗୋଟିଏ ଟିକି ଦୁନିଆ କଳ୍ପନା କରି ତା' ଭିତରେ ହଜିଯିବା ଭଲ ।'

ଆଖି ପିଛୁଳାକେ ସାଣ୍ଟା ସେଠାରୁ ଉଭେଇଗଲେ । ରାଣୀ ଦେଖିଲା,

ସେଇ ଟିକି ସ୍ଲେଜ ଗାଡି ଫଁ ଫଁ କରୁଥିବା ବଲ୍‌ଗା ହରିଣମାନଙ୍କ ସହିତ ଝକ-ଝକ ତାରାଟିଏ ଭଳି ହୋଇ କେଉଁଆଡେ ଅଦୃଶ୍ୟ ହୋଇଗଲା ।

ରାଣୀ ଏଭଳି ଅଦ୍ଭୁତ ଘଟଣାରେ ଅଭ୍ୟସ୍ତ ହୋଇଯାଇଥିଲା । ସେ ତେଣୁ ଟେବୁଲ ଉପରେ ନୀଲୁର ଉପହାର ଡିଆଁ ଡେଇଁ କରୁଥିବାର ଦେଖି ଆଶ୍ଚର୍ଯ୍ୟ ହେଲା ନାହିଁ ।

'ଖୋଲ, ଖୋଲ'—ଗୋଟିଏ ସ୍ପଷ୍ଟ ଗଳାରେ କିଏ କହିଲା ।

ରାଣୀ ଉପହାର ବାକ୍‌ସଟିକୁ ଖୋଲି ପକାଇଲା । କାଳେ ତା' ହାତରୁ ଯେଇଟି ଖସିଯିବ, ସେ କଥା ଭାବି ସେ ଡରି ଯାଇଥିଲା । ହଠାତ୍ ଗୋଟିଏ ଛୋଟ ଉଜ୍ଜ୍ୱଳ ଶିଶୁ, ତା'ର ଉଜ୍ଜ୍ୱଳ କେଶ ଏବଂ ପତଳା ଡେଣା ସହିତ ଘର ଭିତରକୁ ଉଡି ଆସିଲା ଏବଂ ହସି ହସି ଟେବୁଲ ଉପରେ ଓହ୍ଲାଇ ପଡିଲା ।

ରାଣୀ ପଚାରିଲା—'ତୁମେ କିଏ ?'

'ମୁଁ ଗୋଟିଏ ଦେବଦୂତ ।' ତା'ପରେ ସେ ଜୁଳୁ ଜୁଳୁ କରି ଚାହିଁଲା ।

ରାଣୀ କହିଲା—'ବଢିଆ ତ, ନୀଲୁ ଉଠ୍ ଉଠ୍ । ଜଣେ ଦେବଦୂତ ଆସିଛନ୍ତି ।'

'ହୁଁ, ଦେବଦୂତ ।' ନୀଲୁ ଘୁମୁରିଲା । ତା'ପରେ ସେ ପୁଣି ନିଶ୍ଚିନ୍ତରେ ଘୁଙ୍ଗୁଡି ମାରିଲା ।

ଦେବଦୂତ ହସିଲେ । ହଠାତ୍ ସାରା କୋଠରୀଟା ଆଲୁଅରେ ଝଲସି ଉଠିଲା । ନୀଲୁ ବିଛଣାରୁ ଡେଇଁ ପଡିଲା । ସେ ଚିତ୍କାର କଲା—'ମହାକାଶ ଯାତ୍ରୀ ।'

ଦେବଦୂତ ତାକୁ ଆଉଁସି ଦେଇ କହିଲେ, 'ଏବେ. . . ଏବେ ବ୍ୟସ୍ତ ହୁଅ ନାହିଁ । ଚାହାଁ ତ ଦେଖି . . ।'

ସାଙ୍ଗେ ସାଙ୍ଗେ ସାରା କୋଠରୀ ଭିତରେ ଝଲମଲ ଦେବଦୂତ ଗୁଡିଏ ଭର୍ତ୍ତି ହୋଇଗଲେ । ସେମାନେ ଗାଉଥିଲେ—'ଭଗବାନଙ୍କର ଗୌରବ, ପୃଥିବୀ ପାଇଁ ଆନନ୍ଦ ।' ଦେବଦୂତ କହିଲେ—'ଜଲ୍‌ଦି ତୁମର କୋଟ୍ ପିନ୍ଧ ।'

ସେ ସମସ୍ତଙ୍କର କପାଳ ଛୁଇଁ ଦେଲେ । ସେଇ ପିଲାଗୁଡିକ କ୍ରମେ ଛୋଟରୁ ଆହୁରି ଛୋଟ ହୋଇଯିବାକୁ ଲାଗିଲେ ଏବଂ ଦେବଦୂତ ଖୁବ୍ ବଡ ଜଣା ପଡିଲେ ।

କେତେ ସେକେଣ୍ଡ ମଧ୍ୟରେ ସେଇ ଅଦ୍ଭୁତ ପିଲାଗୁଡିକ ଝରକା ବାହାରେ ଆକାଶର ବହୁ ଉଚ୍ଚରେ ମେଘ ଉପରେ ଏବଂ ତାରାମାନଙ୍କ ମେଳରେ ଭାସୁଥିଲେ । ସେମାନେ ଏବେ ଧୀରେ ଧୀରେ ତଳକୁ ଖସୁଥିଲେ

ଏବଂ ବରଫରେ ଛାପିଛାପିକିଆ ଦିଶୁଥିବା ପର୍ବତମାଳା ତଳେ ଥିବା ମାଳମାଳ ଧଳାଘର ଉପରେ ଉଡୁଥିଲେ । ତା'ପରେ ସେମାନେ ସିଧା-ସଳଖ ଓହ୍ଲାଇ ଆସି ଗୃଷଜମି ଉପରେ ଠିଆ ହୋଇଗଲେ ।

ତାଙ୍କ ପାଖରେ ଥିଲେ ପଲେ ମେଣ୍ଢା ଓ ମେଣ୍ଢା ଜଗୁଆଳ । ସେମାନେ ଏକାଠି ଲଗାଲଗି ହୋଇ ବସି ନିଆଁ ପୋଢଥିଲେ । ଜଣେ ଜଗୁଆଳ ସେଇ ଅମାନିଆ ମେଣ୍ଢାପଲ ଉପରେ ନଜର ରଖିଥିଲା ।

ଅକସ୍ମାତ ଲକ୍ଷ ଲକ୍ଷ ସଂଖ୍ୟାରେ ଆଲୋକ ଆକାଶରେ ଝଲସି ଉଠିଲା ଏବଂ ସେଇ ଭୟଭୀତ ମେଣ୍ଢାମାନଙ୍କ ଆଗରେ ଦେବଦୂତ ଜଣକ ଆସି ଠିଆ ହୋଇଗଲେ । ସେ ହସି ହସି କହିଲେ, ''ଡର ନାହିଁ, ମୁଁ ତୁମ ପାଇଁ ଗୋଟିଏ ଚମତ୍କାର ଖବର ଆଣିଛି । ଶାନ୍ତିର ରାଜକୁମାର ଯୁଡାର ବେଥଲ-ହାମଠାରେ ଗୋଟିଏ ଭଙ୍ଗା ଗୁହାଳ ଘରେ ଜନ୍ମ ହୋଇଛନ୍ତି । ତାଙ୍କ ନାଆଁ ହେଉଛି ଯୀଶୁ ଏବଂ ତୁମେ ତାଙ୍କୁ ମେରୀ ଓ ଯୋଶେଫଙ୍କ ସହିତ ଗୋଟିଏ ଗୋରୁ କୁଣ୍ଡ ମଧ୍ୟରେ ପାଇବ ।'

ସେ ଯେମିତି ଏତିକି କହିଛନ୍ତି, ଆକାଶର ପ୍ରତ୍ୟେକ ତାରା ଗୋଟିଏ ଗୋଟିଏ ଦେବଦୂତ ପାଲଟି ଗଲେ । ସେମାନେ ସମସ୍ତେ ଗାଇଲେ, 'ପୃଥି-ବୀରେ ଶାନ୍ତି, ସମସ୍ତଙ୍କୁ ସ୍ନେହ ।'

ମେଣ୍ଢା ଜଗୁଆଳମାନେ ଆଶ୍ଚର୍ଯ୍ୟ ହୋଇଗଲେ । ସେମାନେ ତାଙ୍କ ମେଣ୍ଢା ଛୁଆଗୁଡିକୁ ଛାତିରେ କୁଣ୍ଢେଇ ଧରି ବେଥଲହାମ ଆଡକୁ ଧାଇଁ-ବାକୁ ଲାଗିଲେ ।

ରାଣୀ ପଚାରିଲା, 'ଆମେ ସବୁ କେଉଁଠି ?'

'ପଶ୍ଚିମ ଏସିଆରେ ।' ଦେବଦୂତ ଉତ୍ତର ଦେଲେ ।

ନୀଲୁ ପଚାରିଲା—'ତୁମେ ତା' ହେଲେ କ'ଣ କହୁଛ ଯେ, ଯୀଶୁ ଆମରିମାନଙ୍କ ଭଳି ଏସିଆ ମହାଦେଶର ଜଣେ ଲୋକ ଥିଲେ ?'

'ମୁଁ ସେଇଆ ଭାବୁଛି ।' ଦେବଦୂତ କହିଲେ ।

ପାହାଡ ଏବଂ ଖସଡା ବରଫ ଉପରେ ସେମାନେ ଅସମ୍ଭାଳ ହୋଇ ଧାଇଁଲେ ।

ନୀଲୁ ପଚାରିଲା—'ମେରୀ ଓ ଯୋଶେଫ କିଏ ?'

'ମେରୀ ହେଉଛନ୍ତି ଜଣେ କୁମାରୀ, ଯାହାଙ୍କୁ କି ଈଶ୍ୱର ଯୀଶୁଙ୍କର ମାଆ କରିଛନ୍ତି । ଯୋଶେଫ ହେଉଛନ୍ତି ତାଙ୍କର ସ୍ୱାମୀ ।' ଦେବଦୂତ କହିଲେ ।

'ରୋମର ସମ୍ରାଟ ସିଜର ଓ ଅଗଷ୍ଟସ୍ ତାଙ୍କ ଦେଶରେ କେତେ

ଲୋକ ଅଛନ୍ତି, ତାହା ଜାଣିବାକୁ ଚାହାନ୍ତି । ତେଣୁ ପ୍ରତ୍ୟେକ ଲୋକ ନିଜକୁ ସୁମାରି କରାଇବାକୁ ନିଜ ନିଜର ଜନ୍ମ ସହରକୁ ଫେରିଯିବା ପାଇଁ ସେ ଆଦେଶ ଦେଇଛନ୍ତି । ମେରି ଏବଂ ଯୋଶେଫ ଆଉ ଲୋକ ଗହଳି ଭିତରେ ବେଥଲହାମକୁ ଫେରୁଥିଲେ ।

'ଟ୍ରେନ ନାହିଁ, ବସ ନାହିଁ । ଏଇଟା ତ ବଡ ସାଂଘାତିକ କଥା ହୋଇଥିବ ।' ରାଣୀ କହିଲା ।

ଦେବଦୂତ କହିଲେ, 'ହଁ, ତା' ଠିକ୍ । ତାଙ୍କୁ ଚାଲି ଚାଲି ଯିବାକୁ ପଡିଲା କିମ୍ବା ଗଧ ପିଠିରେ ବସି ମାଇଲ ମାଇଲ ବାଟ ଅତିକ୍ରମ କରିବାକୁ ହେଲା, କାରଣ ପିଲାଟି ସେତେବେଳକୁ ଜନ୍ମ ହେବା ଉପରେ, ମାତ୍ର ସେମାନେ କେଉଁଠି ହେଲେ ଟିକିଏ ଆଶ୍ରୟ ପାଇଲେ ନାହିଁ ।'

ରାଣୀ ଉତ୍କଣ୍ଠିତ ଭାବରେ ପଚାରିଲା—'ସେମାନେ ତା' ହେଲେ ବର୍ତ୍ତମାନ କେଉଁଠି ?'

ଦେବଦୂତ କହିଲେ—'ବେଶ୍, ସରାଇଖାନା (ଧର୍ମଶାଳା)ର ମାଲିକ ତାଙ୍କୁ ବସ୍ତି ଦେବାକୁ ଇଚ୍ଛା କଲା ନାହିଁ । ତେଣୁ ସେମାନଙ୍କୁ ସେ ତାର ଗୁହାଳ ଘରେ ରହିବାକୁ ଅନୁମତି ଦେଲା ।'

ରାଣୀ କହିଲା, 'ହେ ଭଗବାନ, ତୁମ ପିଲାଟି ଗୁହାଳ ଘରେ କେମିତି ରହିଲା, ଟିକିଏ କଳ୍ପନା କର ।'

ସାରା ରାତି ସେମାନେ ଧାଇଁ ଧାଇଁ ଅନ୍ଧାରୁଆ ନିମ୍ନ ପର୍ବତମାଳା ମଧ୍ୟରେ ଶିଶୁଟିଏ ଭଳି ଶାନ୍ତିରେ ଢୁଳେଇ ପଡିଥିବା ବେଥଲହାମ ସହରରେ ଯାଇ ପହଞ୍ଚିଗଲେ ।

'ଆରେ ଦେଖ, ଦେଖ' ନୀଲୁ ପାଟି କଲା—'ଓଟ ଗୁଡାଏ ।'

ତିନୋଟି ବିରାଟ କଳା ମୂର୍ତ୍ତି ସେଇ ଧଳା ଘରଗୁଡିକ ଆଡକୁ ଆଗେଇ ଆସୁ ଥାଆନ୍ତି । ଜଣେ ଆରୋହୀ ସେମାନଙ୍କୁ ଗୋଟିଏ ଘର ଅଗଣାରେ ଥିବା ଭଙ୍ଗା ଗୁହାଳ ଆଡକୁ ଆଗେଇ ନେଉଥିବା ଭଳି ଗୋଟିଏ ବିରାଟ ତାରାକୁ ବାରମ୍ବାର ଦେଖାଇ ଦେଉଥିଲେ ।

ଏବେ ପିଲାମାନେ ସେ ସବୁ ଦେଖିବା ପାଇଁ ଖୁବ୍ ଆଗ୍ରହରେ ଧାଉଁଥିଲେ ।

ଦେବଦୂତ କହିଲେ—'ଯେଉଁମାନେ ସୁଖ ଓ ସ୍ନେହ ଚାହାନ୍ତି ସେମାନଙ୍କ ପାଇଁ ଏଇଠି ଶାନ୍ତିର ରାଜକୁମାର ଜନ୍ମ ହୋଇଛନ୍ତି ଏବଂ ସେଠାରେ ତାଙ୍କ ମାଆ ଅଛନ୍ତି । କୌଣସି ଜଣେ ହେଲେ ସ୍ୱାର୍ଥପର ଧନୀଲୋକର ହୃଦୟରେ ତାଙ୍କ ପାଇଁ ଟିକିଏ ସ୍ଥାନ ନ ଥିଲା । କେବଳ ବିଚରା ଏଇ

ବଳଦ ଓ ଗଧ ଯୀଶୁଙ୍କୁ ପାଛୋଟି ନେଲେ ଏବଂ ତାଙ୍କ ନଡାଗଦା ଉପରେ ଦୋଳିଟିଏ କରିଦେଲେ ।

ମେଣ୍ଢା ଜଗୁଆଳମାନେ ଧାଇଁ ଗଲେ । ଆଖିରେ ସେମାନଙ୍କର ଆଶାର ଉଜ୍ଜ୍ୱଳ ଆଲୋକ । ଅବିଳମ୍ବେ ସେଇ ତିନୋଟି ରହସ୍ୟଜନକ ମୂର୍ତ୍ତି ଓଟ ପିଠିରୁ ଓହ୍ଲାଇ ପଡିଲେ ଏବଂ ଜରି ପୋଷାକରୁ ଧୂଳି ଝାଡି, ହାତରେ ଦାମିକା ଉପହାର ଧରି ଭିତରେ ପଶିଲେ।

ସେମାନେ ଶିଶୁଟିକୁ ଦେଖି କହିଲେ—'ହେ ବିରାଟ ଅଧୀଶ୍ୱର, ଆପଣଙ୍କର ତାରାଟି ଆମକୁ ବହୁଦୂର ରାଜ୍ୟରୁ ବାଟ କଢାଇ ଆଣିଛି। ଏଇ ହେଉଛି ଆପଣଙ୍କ ପାଇଁ ଆମ ଉପହାର । ସୁନା କେବଳ ରାଜା ପାଇଁ ଉପ-ଯୁକ୍ତ । ଧୂପ ଦୀପ ଦେଇ ଆମେ ଆପଣଙ୍କୁ ଈଶ୍ୱରଙ୍କ ଭଳି ପୂଜା କରୁଛୁ ଏବଂ ମାନ୍ୟ କରୁଛୁ । ଆପଣ ପୃଥିବୀକୁ କାହିଁକି ଆସିଥିଲେ, ସେ କଥା ନ ବୁଝି ଲୋକମାନେ ଯେତେବେଳେ ଆପଣଙ୍କୁ ହତ୍ୟା କରିବେ; ସେତେବେଳେ ଧୂପ ଦୀପ ଦେଇ ଆପଣଙ୍କୁ ପୂଜା କରାଯିବ । ହେ ମହାନ ରାଜକୁମାର, ଆମର ଏଇ ଉପହାରଗୁଡିକ ଗ୍ରହଣ କରନ୍ତୁ ।'

ନୀଲୁ ଚୁପଚୁପ କରି ପଚାରିଲା, 'ସେମାନେ ଏସବୁ କଥା କେମିତି ଜାଣିଲେ ?'

ଦେବଦୂତ କହିଲେ, 'ସେମାନେ ହେଉଛନ୍ତି ଜ୍ୟୋତିଷ । ସେମାନେ ରାଶି ନକ୍ଷତ୍ର କଥା ଜାଣନ୍ତି । କିନ୍ତୁ ସେମାନେ ସବୁଠୁ ଆଶ୍ଚର୍ଯ୍ୟଜନକ କଥାଟି ଜାଣନ୍ତି ନାହିଁ ।'

'ଏଥିଠାରୁ ଅଧିକ ଆଶ୍ଚର୍ଯ୍ୟଜନକ କଥା ପୁଣି ଥାଇପାରେ ?' ରାଣୀ ଗୁଣୁଗୁଣୁ ହେଲା ।

ଦେବଦୂତ ହସିଲେ । କହିଲେ, 'ସେମାନେ ଜାଣନ୍ତି ନାହିଁ ଯେ, ସେ ବଡ ହେଲେ 'ଗୁଡ ଫ୍ରାଇଡେ' ଦିନ ତାଙ୍କୁ ହତ୍ୟା କରାଯିବ ଏବଂ ତିନିଦିନ ପରେ 'ଇଷ୍ଟର' ଦିନ ସେ ତାଙ୍କ ସମାଧିରୁ ଉଠି ଚିରଜୀବନ ଲାଭ କରିବେ।'

ରାଣୀ ଏବଂ ନୀଲୁ ଶିଶୁଟିକୁ ଚାହିଁ ରହିଲେ । ସେ ସେମାନଙ୍କୁ ସିଧା-ସଳଖ ଚାହିଁ ହସିଲେ ।

ଦେବଦୂତ ଗୀତ ଗାଇଲେ, 'ସେ ସମସ୍ତଙ୍କୁ ଦିଅନ୍ତି ଜୀବନ ଏବଂ ଆନନ୍ଦ ।'

* * *

'ଏମିତି ଗୋଟିଏ ଥଣ୍ଡା ରାତିରେ ତୁମେ ଝରକା କବାଟ ପୂରା ମେଲା କରି ଶୋଇଥିଲ ?'

ନୀଲୁ ଏବଂ ରଣୀ ଆଖି ମଳିମଳି ଚାହିଁଲେ । ଦେବଦୂତଙ୍କର ସଙ୍ଗୀତ ତଥାପି ତାଙ୍କ କାନରେ ବାଜି ଯାଉଥାଏ । ଦେବଦୂତ ଦେଇଥିବା ବାକ୍ସଟି ଖୋଲା ହୋଇ ଟେବୁଲ ଉପରେ ସେମିତି ପଡିଥାଏ । ତାଙ୍କ ମାଆଙ୍କ ସ୍ୱର ବାରମ୍ବାର ଶୁଭୁ ଥାଏ ।

'ଏ କ'ଣ ? ଗୋଟିଏ ଖୋଲା ଉପହାର ? ଆଉ ତୁମ ଯୋତାଗୁଡାକ ପୂରା ଓଦା . . . ?'

ପିଲାମାନେ ପରସ୍ପର ମୁହଁକୁ ଚାହିଁ ଲୁଚେଇ ଲୁଚେଇ ହସିଲେ ।

ଏଇଟା ଥିଲା ତାଙ୍କର ପ୍ରିୟ ବଡଦିନ ସକାଳ ।

ଜାମିଲା ଭର୍‌ଗିଜ୍

# ଲୋହରି

ଦିନେ ସଞ୍ଜବେଳେ ଗାଆଁର ଦଳେ ଝିଅ ସେମାନଙ୍କର ଜଣେ ସାଙ୍ଗ ଘରେ ଯାଇ ଏକାଠି ହେଲେ । ସେମାନେ ଖୁବ୍ ଖୁସି ମିଜାସରେ ଥାଆନ୍ତି । ସେମାନଙ୍କ ମଧ୍ୟରୁ ଜଣେ ଅସମ୍ଭାଳ ହୋଇ କହି ପକାଇଲା । 'ତୁମକୁ ସବୁ ଠାକୁରଙ୍କ ରଣ, ଚାଲ ଯିବା ଅନ୍ଧାର ହୋଇଯାଉଛି ପରା ।' ଆଉ ଜଣେ କହିଲା, ଏତେ ତରତର କାହିଁକି ? ଲୋହରିତ ଆହୁରି ଆଠ ଦିନ ଅଛି ।' ଅନ୍ୟମାନେ ଆପତ୍ତି କଲେ 'ମୋଟେ ଆଠ ଦିନତ । ଚାଲୁନା ଆଉ ସବୁ ଜିନିଷ ଯୋଗାଡ଼ କରିବା ଏବଂ ଘରବୁଲିବା କାମ ଆରମ୍ଭ କରିଦେବା ।'

ତାପରେ ଝିଅମାନଙ୍କର ନାଆଁ ଧରି ଖୁବ୍ ଡକାହକା ଚାଲିଲା ପରେ ପରେ ଗାଆଁରେ ଥିବା ଦଶ ବାର ବର୍ଷ ବୟସର ସବୁ ଝିଅ ଆସି ଏକାଠି ହେଲେ । ଜଣେ ପଚାରିଲା, 'ଆଚ୍ଛା କାହାଘରୁ ଆଗେ ଆରମ୍ଭ କରିବା ?' ଭିନ୍ନ ଭିନ୍ନ ଘରର ନାଆଁ ଉଠିଲା, ପରିଶେଷରେ ସ୍ଥିର ହେଲା, ଗାଆଁ ମୁଖିଆଙ୍କ ଘରୁ ଆରମ୍ଭ କରାଯିବ ।

ଝିଅମାନେ ତାଙ୍କ ଘର ଆଗରେ ଯାଇ ରୁଣ୍ଡ ହେଲେ ଏବଂ ଗୀତ ଗାଇଲେ—

ଆସିଲୁ ଆମେ ଗାଆଁର ସବୁ ଝିଅ
ମୁଖିଆ ହୋ
ଆସିଲୁ ଆମେ ତୁମରି ଦୁଆରକୁ ।

ମୁଖିଆଙ୍କ ଝିଅ ଜିତୁ ଦୁଆର ଖୋଲିଦେଲା ଏବଂ ସେମାନଙ୍କୁ ଫତାଏ ଗୋବର—ଘଷି ଦେଲା । ଝିଅମାନେ ଆପତ୍ତି କଲେ, 'ଆମେ ଫତାଏ ନେବୁ ନାହିଁ ,ତୁମ ଘରକୁ ଆମେ ପ୍ରଥମେ ଆସିଛୁ । ତୁମେ ନିଶ୍ଚେ ପାଞ୍ଚ ଫତା ଦେବ । ' ଜିତୁର ମାଆ ସେମାନଙ୍କୁ ପାଞ୍ଚ ଫତା ଦେବାକୁ କହିଲେ । ଝିଅ-ମାନେ ଘଷି ନେଉ ନେଉ କହିଲେ, 'ତୁ ଆମ ସାଙ୍ଗରେ ଆସୁନୁ ।' ଜିତୁ ନାଚିବାକୁ ଓ ଗାଇବାକୁ ଭଲପାଏ । ସେ ଝିଅମାନଙ୍କ ସାଙ୍ଗରେ ଯିବକି ନାହିଁ, ତାର ମାଆଙ୍କୁ ପଚାରିଲା । ମାଆ ରାଜି ହେଲେ ଏବଂ କହିଲେ, 'ତୋ ମାମୁଁ ଝିଅ ହାରଜିତକୁ ସାଙ୍ଗରେ ନେଇଯାଅ । ପଞ୍ଜାବରେ ଆମେ ସବୁ କେମିତି ଲୋହରି ପାଳନ କରୁ, ସେ କଥା ସେ କେବେ ଦେଖି ନାହିଁ ।'

ଝିଅମାନେ ଏମିତି ଘରକୁ ଘର ବୁଲି ଗଦାଏ ହେଲା ପର୍ଯ୍ୟନ୍ତ ଘଷି ସଂଗ୍ରହ କଲେ । ତାପରେ ସେଗୁଡିକ ନେଇ ମୁଖିଆଙ୍କ ଘରେ ଜମାକଲେ ଏବଂ ନିଜ ନିଜ ଘରକୁ ଫେରିଗଲେ ।

ତା'ପରଦିନ ହାରଜିତ ତାର ପିଇସୀକୁ ପଚାରିଲା—'ଝିଅମାନେ କାହିଁକି ଗୋବର— ଘଷି ମାଗୁଛନ୍ତି ?'

ପିଇସୀ ଉତ୍ତର ଦେଲେ—'ପୌଷ ମାସର ଶେଷ ଦିନ ଶୀତ ସରି ଯିବାର ଚିହ୍ନ ସ୍ୱରୂପ ଲୋହରି ପର୍ବ ପାଳନ କରାଯାଏ । କଥିତ ଅଛି, ଆମ ପୂର୍ବ ପୁରୁଷ ମାନେ ଗୋଟିଏ ମନ୍ତ୍ର ତିଆରି କରିଥିଲେ, ଯାହାକି ସେମାନଙ୍କୁ ଶୀତରୁ ରକ୍ଷା କରୁଥିଲା । ଏଇ ମନ୍ତ୍ର ପଢି ଅଧିକ ଉତ୍ତାପ ଦେବା ପାଇଁ ସୂର୍ଯ୍ୟ ଦେବତାଙ୍କୁ ସେମାନେ ପ୍ରାର୍ଥନା କରୁଥିଲେ । ଫଳରେ ଶୀତ ସେମାନଙ୍କର କିଛି କ୍ଷତି କରୁ ନ ଥିଲା । ଆଉ ମଧ୍ୟ ସୂର୍ଯ୍ୟ ଦେବତାଙ୍କୁ କୃତଜ୍ଞତା ଜଣାଇ ସେମାନେ ପୌଷମାସର ଶେଷ ଦିନ ନିଆଁ ଚାରିପାଖରେ ବୁଲି ଏଇ ମନ୍ତ୍ର ଗାଉଥିଲେ । ଲୋହରି ଅଗ୍ନି ହେଉଛି ସୂର୍ଯ୍ୟ ବନ୍ଦନାର ଗୋଟିଏ ପ୍ରତୀକ । ଏଇ ଅବସରରେ ଗୋଟିଏ ଗୀତ ବୋଲାଯାଏ—

ଶୀତ କମ୍ବଳ ନିଆଁ ଉଡ଼େଇ କୁଆଡେ ଗଲା ?
—ସୁନା ପାହାଡକୁ,
ସୁନା ପାହାଡ କୁଆଡେ ଗଲା ?
—ସୂର୍ଯ୍ୟ କିରଣ ପାଖକୁ,
ସୂର୍ଯ୍ୟ କିରଣ କୁଆଡେ ଗଲା ?
—ସୂର୍ଯ୍ୟ ପାଖକୁ ।
ସୂର୍ଯ୍ୟ କୁଆଡେ ଗଲେ ?
—ନିଆଁ ପାଖକୁ ।
ନିଆଁ ଜଳୁଛି, ଖରା ମାରୁଛି, ବରଫ ତରଳୁଛି,
ଶୀତ ଦିନ ସରିଗଲା ।

ଆମ ପୂର୍ବ ପୁରୁଷମାନେ ବିଶ୍ୱାସ କରୁଥିଲେ ଯେ ସେମାନେ ଯେଉଁ ନିଆଁ ଜାଳୁଥିଲେ, ତା'ର ଶିଖା ସେମାନଙ୍କ କଥାକୁ ସୂର୍ଯ୍ୟଙ୍କ ପାଖକୁ ନେଇ ଯାଉଥିଲା । ସେଇ କାରଣରୁ ଲୋହରି ପରଦିନ ସକାଳେ, ଅର୍ଥାତ ମାଘ ମାସର ପ୍ରଥମ ଦିନ ଖରା ହଠାତ୍ ଟାଣ ହୋଇଯାଏ ଏବଂ ହାଡଭଙ୍ଗା ଶୀତକୁ ନେଇଯାଏ ।

ଏହା ବ୍ୟତୀତ ଲୋହରି ବିଷୟରେ ଆଉ ଗୋଟିଏ କଥା ଅଛି । ପୂର୍ବ କାଳରେ ମନୁଷ୍ୟମାନେ ହିଂସ୍ର ଜନ୍ତୁଙ୍କ ହାତରୁ ନିଜର ବର୍ଷିକୁ ରକ୍ଷାକରିବା

ନିମନ୍ତେ ନିଆଁ ଜାଳୁ ଥିଲେ । କୋଠରେ ନିଆଁ ଜାଳିବା ପାଇଁ ସମସ୍ତେ କିଛି କିଛି ସାହାଯ୍ୟ କରୁଥିଲେ ଏବଂ ଏଥିପାଇଁ ଛୋଟ ପୁଅ ଝିଅମାନେ ଜଙ୍ଗଲରୁ ଜାଳେଣି କାଠ ଗୋଟାଇ ଆଣୁଥିଲେ । ସେଇ କାରଣରୁ ଏବେ ମଧ୍ୟ ଆମେ ଲୋହରି ଦିନ ଯେଉଁ ଗୋବର-ଘଷି ନିଆଁ ଜାଳୁ, ତାକୁ ଛୋଟ ଛୋଟ ପିଲାମାନେ ଘର ଘର ବୁଲି ସଂଗ୍ରହ କରନ୍ତି । ଲୋହରି ଅଗ୍ନି ଉତ୍ସବ ହେଉଛି ଏକ ପ୍ରକାର ଅଗ୍ନି ପୂଜା ଏବଂ ସେଇ ପୁରୁଣା ଆତ୍ମରକ୍ଷା ପଦ୍ଧତିର ଏକ ନମୁନା । ଲୋହରି ଅଗ୍ନି ପାଖରେ ସ୍ୱାମୀ ସ୍ତ୍ରୀ ମିଶି ଅଧିକ ପୁତ୍ର କନ୍ୟା ନିମନ୍ତେ ଏବଂ ବାପ ମାଆ ସେମାନଙ୍କର ଅବିବାହିତା ଝିଅ ପାଇଁ ବର-ପାତ୍ର ନିମନ୍ତେ ପ୍ରାର୍ଥନା କରନ୍ତି । ଲୋକମାନେ ଯେତେବେଳେ ପୁଅ ମାଗନ୍ତି; ସେମାନେ ସେତେବେଳେ ନିଆଁକୁ ରାଶି ଦାନା ଛାଟନ୍ତି । ପ୍ରବାଦ ଅଛି ଯେ, ବଡ ବୋହୂ ଯେତିକିଟି ରାଶି ଦାନା ନିଆଁକୁ ଛାଟିବ, ତା' ବାବଦରେ ସାନ ବୋହୂର ସେତିକିଟି ପୁଅ ହେବ । ସେଇଥି ପାଇଁ ଯେଉଁ ପରିବାରରେ ନୂଆ ପୁଅଟିଏ ଜନ୍ମ ହୋଇଥାଏ ବା ପୁଅଟି ନୂଆ କରି ବାହା ହୋଇଥାଏ, ସେ ଘରେ ଲୋହରି ଅଧିକ ଆଗ୍ରହରେ ପାଳନ କରଯାଏ । ଏତିକିବେଳେ ଗୁଡ ଓ ରାଶି ଦାନାରେ ତିଆରି ମିଠେଇ ବନ୍ଧୁବାନ୍ଧବଙ୍କ ଘରକୁ ପଠାଯାଏ । ପଞ୍ଜାବୀ ଭାଷାରେ ରାଶିକୁ ତିଳ ଏବଂ ଗୁଡକୁ 'ରେଉ୍ହି' ବୋଲି କୁହାଯାଉଥିବାରୁ ଏଇ ପର୍ବଟିକୁ 'ତିଲେରି' ବୋଲି ମଧ୍ୟ କୁହାଯାଏ । ଆଉରି ମଧ୍ୟ ଲୋହରି ଉପଲକ୍ଷେ ପିତା ମାତା ତାଙ୍କର ନବବିବାହିତା କନ୍ୟା ଘରକୁ ଖାଦ୍ୟ ପଠାନ୍ତି ।

କୃଷୀମାନଙ୍କ ପାଇଁ ଲୋହରି ହେଉଛି ନୂଆ ହିସାବ ବର୍ଷ ଆରମ୍ଭର ଏକ ସୂଚନା । କାରଣ ଏଇଦିନ ଜମି ମାଲିକ ଓ କୃଷୀଙ୍କ ମଧ୍ୟରେ ଅମଳ ହୋଇଥିବା ଫସଲର ବଣ୍ଟାବଣ୍ଟି କାମ ଫଇସଲା ହୁଏ ।

ଲୋହରି ବିଷୟରେ ପିଇସୀଙ୍କର ଲମ୍ବା ଭାଷଣ ଏଇଠି ଶେଷ ହେଲା । ଯା ଭିତରେ ଝିଅମାନେ ଲୋହରି ଗୀତ ଗାଇ, ଦଳଦଳ ହୋଇ ଘରକୁ ଘର ବୁଲି ଜିନିଷ ମାଗୁଥାଆନ୍ତି । 'ବର' ଘରୁ ସେମାନେ ଗୁଡ଼ ମାଗନ୍ତି, ନୂଆ ପିଲା ଜନ୍ମ ହୋଇଥିବା ଘରେ ସେମାନେ ଆଶୀର୍ବାଦ ଗୀତ ଗାଆନ୍ତି ।

ଲୋହରିର ପୂର୍ବ ଦିନ ସଞ୍ଜରେ ପୁଅମାନେ ଦଳଦଳ ହୋଇ ସବୁଠାରୁ ଅଧିକ ଲୋକପ୍ରିୟ ଏଇ ଗୀତଟି ଗାଆନ୍ତି ଏବଂ ଗୀତଟି 'ହୋ' ସମ୍ବୋଧନରେ ଶେଷ ହୁଏ ।

ଏଇଟି ଗୋଟିଏ ବଢ଼ିଆ ମୁଦି ହୋ,
ତୁମ ମାଲିକ କିଏ ହୋ ?

ଭଟ୍ଟି ଗାଆଁର ଦୁଲ୍ଲା ହୋ
ଦୁଲ୍ଲା ବାହା ହେଲା ଆଉ କାହାର
ଝିଅକୁ ହୋ, ଇତ୍ୟାଦି ।

ବାହାଘର ସହିତ ଲୋହରିର ମଧ୍ୟ ସଂପର୍କ ଥିବାରୁ ଅଧିକାଂଶ ଲୋହରି ଗୀତ 'ଦୁଲ୍ଲା-ଭଟ୍ଟି' ସଂପର୍କୀୟ ସେଇ ପୁରୁଣା ପ୍ରେମ କାହାଣୀକୁ ନେଇ ରଚିତ । କେତେକ ଦୁଷ୍ଟ ଲୋକ ଗୋଟିଏ ଝିଅକୁ ଚୋରି କରି ନେଇ ଯାଉଥିବାବେଳେ ତାଙ୍କ କବଳରୁ ଉଦ୍ଧାର କଲେ ଏବଂ ତାକୁ ନିଜର ଝିଅ ଭଳି ରଖିଥିବା ଗୋଟିଏ ଲୋକ ବିଷୟରେ ଏହା ହେଉଛି ଗପଟିଏ । ଶେଷରେ ଠିକ୍ ନିଜ ଝିଅ ଭଳି ସେ ତାକୁ ବାହାକରେଇ ଦେଇଥିଲା । ଯୁବକ ମାନେ ନିଜର ଝିଅ ବା ଭଉଣୀମାନଙ୍କର ସମ୍ମାନ ରକ୍ଷା କରିବାକୁ ଏବଂ ଯେଉଁମାନେ ସେମାନଙ୍କର ଅସମ୍ମାନ କରିବେ ତାଙ୍କୁ ଦଣ୍ଡ ଦେବାକୁ ଏଇ ଗୀତ ପ୍ରେରଣା ଦିଏ ।

ଛୋଟ ଛୋଟ ପିଲାମାନେ ସେମାନଙ୍କର ସ୍କୁଲ ଜୀବନ ବିଷୟରେ ଗୀତ ଗାଆନ୍ତି—'ମୋ ଦୁଆତରେ ସଫା ମାଖନ ଅଛି ।'

ସବୁ ଆୟୋଜନ ଶେଷରେ ଲୋହରି ଦିନଟି ଆସି ପହଞ୍ଚିଯାଏ । ପୁଅପିଲାମାନେ ସଂଗ୍ରହ କରିଥିବା ଗୋବର ଘଷିକୁ ଏକାଠି ଗଦାକରନ୍ତି । ଝିଅମାନେ ମଧ୍ୟ ଅଲଗା ଭାବେ ପିରାମିଡ ଆକାରରେ ଆଉ ଗୋଟିଏ ଗଦା ତିଆରି କରନ୍ତି । ଗାଆଁ ମୁଖିଆଙ୍କ ସ୍ତ୍ରୀ ତାଙ୍କ ଘରେ ଗୋଟିଏ ଭୋଜିର ଆୟୋଜନ କରି ଥାଆନ୍ତି । ସେ ବାଲ୍‌ଟିଏ ଆଖୁ ରସ; କେତେ ଥାଳି ଚାଉଳ ଏବଂ ମସୁର ଡାଲି ନେଇ ଖେଚେଡ଼ି ରାନ୍ଧନ୍ତି । ତା'ଛଡ଼ା ହାଣ୍ଡିରେ କିଛି ସଜତୋଳା ସୋରିଷ ପତ୍ର ପକାଯାଏ । ଏସବୁ ଦେଖି ହାରଜିତ ଆବାକାବା ହୋଇ ପଚାରେ 'ପିଇସୀ, ଏତେ ଥଣ୍ଡା ପାଗରେ ଏସବୁ କାହିଁକି ରାନ୍ଧୁଛ ?' ପିଇସୀ ବୁଝାଇ ଦିଅନ୍ତି, 'ଝିଅ, ଆମ ପୂର୍ବ ପୁରୁଷମାନେ ଖୁବ୍ ବୁଦ୍ଧିମାନ ଥିଲେ । ସେମାନେ ପର୍ବଦିନମାନଙ୍କରେ ଏଇ ନୀତି ଶିକ୍ଷା ଦେଉଥିଲେ ଯେ, ଉତ୍ତମ ସ୍ୱାସ୍ଥ୍ୟ ହିଁ ହେଉଛି ପ୍ରକୃତ ସମ୍ପତ୍ତି । ତୁ ଭଲ ରୂପେ ଜାଣୁ ଯେ, ଶୀତ ଦିନେ ଆମ ଦେହ ଭିତରେ ରକ୍ତ ଜମାଟ ବାନ୍ଧିଯାଏ । ଆମେ ନିଆଁରେ ଦେହକୁ ସେକି ଦେଉ ଏବଂ ଶରୀରକୁ ଉତ୍ତାପ ଦେଲାଭଳି ଖାଦ୍ୟ ଖାଉ । ମାଘ ମାସ ଆରମ୍ଭରେ ଏହା ପୁଣି ଠିକ୍ ହୋଇଯାଏ ଏବଂ ରକ୍ତ ପୁଣି ନୂତନ ବେଗରେ ସଞ୍ଚାରିତ ହେବାକୁ ଲାଗେ । ଏହା ପୂର୍ବରୁ ଦେହ ଭିତରଟା ସଫା କରି ଦେବା ଉଚିତ । ଖତାଶାଗ, ସୋରିଷପତ୍ର, ମସୁରଡାଲି

ଇତ୍ୟାଦିକୁ ଏକାଠି ଆମ୍ବ ଗଛରେ ରଖି ଖାଇଲେ ତାହା ଭଲ କାମ କରେ ।’

ଲୋହରି ଦିନ ପ୍ରତ୍ୟେକ ନିଜର ଭଲ ଭଲ ଲୁଗାପଟା ପିନ୍ଧି ଖୁସି ମିଜାଜରେ ଥାଆନ୍ତି । ମିଠେଇ ଦିଆନିଆ ହୁଏ । ଗାଆଁ ମୁଖିଆଙ୍କ ସ୍ତ୍ରୀ ତାଙ୍କ ଅଗଣା ସଫା ସୁତୁରା କରି ପାଣି ଛିଞ୍ଚନ୍ତି । ତା’ପରେ ଯେଉଁ ପୁଅଟି ପାଇଁ ପର୍ବ ଆୟୋଜନ କରାଯାଇଥାଏ, ତାକୁ ସେ ଡାକନ୍ତି । ସେ ଗୋଟିଏ କୋଦାଳ ନେଇ ମାଟି ଉପରେ ଗୋଟିଏ ବୃତ୍ତ କାଟେ । ଖୋଳା ମାଟିକୁ ମଝିରେ ଚଳେଇ ସମାନ କରିଦିଏ । ଝିଅମାନେ ଗୋବର-ଘଷି ଓ କାଠ ଆଣନ୍ତି । ମୁଖିଆଙ୍କ ସ୍ତ୍ରୀ ପ୍ରାୟ ପାଞ୍ଚ ଫୁଟ ଉଚ୍ଚରେ ପିରାମିଡ ଆକାରରେ ସୁନ୍ଦର ଭାବେ ତାକୁ ଗଦେଇ ଦିଅନ୍ତି । ପବନ ଯିବା ପାଇଁ ମଝିରେ ମଝିରେ ଟିକିଏ ଫାଙ୍କ ରଖିଥାଆନ୍ତି ।

ସଂଧ୍ୟା ହୁଏ । ଗାଆଁ ଝିଅମାନେ ବଢ଼ିଆ ବଢ଼ିଆ ଲୁଗାପଟା ପିନ୍ଧି ଅଗଣାରେ ଆସି ରୁଣ୍ଡ ହୁଅନ୍ତି । ନବ ବିବାହିତା ଝିଅମାନେ ଅଳଙ୍କାର ପତ୍ର ପିନ୍ଧନ୍ତି । ନବଜାତ ଶିଶୁମାନଙ୍କ ହାତରେ ପାନିଆ ଧରିବାକୁ ଦିଆଯାଏ । ମୁଖିଆଙ୍କ ମାଆ ଚୂଲିରୁ ଖଣ୍ଡେ ଜଳନ୍ତା କାଠ ଆଣି ଲୋହରି ପିରାମିଡରେ ଲଗାଇ ଦିଅନ୍ତି । ନିଆଁ ଯେମିତି ହୁତ୍-ହୁତ୍ ହୋଇ ଜଳେ ଝିଅମାନେ ସେଥିରେ ରାଶିଦାନା ଛାଟନ୍ତି ଏବଂ ପ୍ରଣାମ କରନ୍ତି । କେହି ଜଣେ ଗାଏ :

ଶୁଦ୍ଧ ଆସୁ ଅଶୁଦ୍ଧ ଯାଉ
ଅଳିଆ ଅସନା ମୂଳପୋଛ ହେଉ
ଏବଂ ଏହାର ମୂଳକୁ ନିଆଁରେ ପକାଯାଉ ।

ଭିତୁ ଆଖୁ ଖଣ୍ଡେ ନିଆଁକୁ ପକାଏ । ପୋଡ଼ା ଆଖୁର ବାସନାରେ ଅଗଣାସାରା ମହକି ଉଠେ । ଝିଅମାନେ ବାଣ ଫୁଟାନ୍ତି । ନିଆଁ ଶିଖାରେ ସମସ୍ତଙ୍କର ମୁଖମଣ୍ଡଳ ସୁନେଲି ରଙ୍ଗରେ ଝଲସି ଉଠେ । ସକାଳ ହେବା ପର୍ଯ୍ୟନ୍ତ ଲୋକମାନେ ନାଚଗୀତ କରନ୍ତି ଏବଂ ଛୋଟ ଛୋଟ ପିଲାମାନେ ମାଆ କୋଳରେ ଶୋଇ ଯାଆନ୍ତି ।

ପରଦିନ ସକାଳୁ ହାରଜିତ ଘଷି ଓ କାଠ ଗଦାରୁ ଆଉ କଅଣ ବଳିଛି, ସେ କଥା ଦେଖିବା ପାଇଁ ଅଗଣାକୁ ଯାଏ । କିନ୍ତୁ ତା’ର କିଛି ଚିହ୍ନ ବର୍ଣ୍ଣ ନ ଥାଏ । ଏପରିକି ପୋଡ଼ା ପାଉଁଶ ମଧ୍ୟ ନ ଥାଏ । ପିଇସୀଙ୍କୁ ଏହାର କାରଣ ପଚାରିବାରୁ ସେ କହନ୍ତି, ‘ଝିଅ, ସେଇ ପାଉଁଶକୁ ଲୋକମାନେ ଅତି ପବିତ୍ର ବୋଲି ମନେ କରନ୍ତି । କାରଣ ପିଲାମାନେ ସଂଗ୍ରହ କରିଥିବା ଜିନିଷର ଏହା ହେଉଛି ଅବଶିଷ୍ଟାଂଶ । ଆମମାନଙ୍କର ତଥା ଆମ ପିଲା

ଲୁଆଙ୍କର ମଙ୍ଗଳ ପାଇଁ ଏହାରି ଉପରେ ପ୍ରାର୍ଥନା କରାଯାଏ । ସୂର୍ଯ୍ୟୋଦୟ ପୂର୍ବରୁ ଗାଧୋଇ ପାଧୋଇ ଏଇ ପାଉଁଶକୁ ଲୋକମାନେ ଗୋଟାନ୍ତି ଏବଂ ତାକୁ ଭଗବାନଙ୍କର ଉପହାର ରୂପେ ଘରକୁ ନେଇ ଯାଆନ୍ତି ।'

ମୂଳ ପଞ୍ଜାବୀ ଲେଖା : ଗୁରୁ ଦୟାଲ ସିଂ ଫୁଲ୍

# ପୋଙ୍ଗଲ

ଗୋପାଳଙ୍କୁ ଯେତେବେଳେ ପ୍ରାୟ ନ' ବର୍ଷ ବୟସ, ତା'ର ବାପାଙ୍କୁ କାନାଡ଼ାରେ ଗୋଟିଏ ଚାକିରୀ ମିଳିଗଲା ଏବଂ ତାଙ୍କ ପରିବାର ସେଠାକୁ ଚାଲିଗଲେ ।

ଏହା ହେଉଛି ତିନି ବର୍ଷ ତଳର କଥା ।

ଗୋପାଳ କାନାଡ଼ାକୁ ଅଧିକ ଭଲ ପାଉଥିଲା; କିନ୍ତୁ ବେଳେବେଳେ ଭାରତ କଥା ତା'ର ଖୁବ୍ ମନେ ପଡ଼ୁଥିଲା । ତା'ର ମନେ ପଡ଼ୁଥିଲା ମାନ୍ଦ୍ରାଜ ନିକଟବର୍ତ୍ତୀ ସେଇ ଗାଆଁଟି, ଯେଉଁଠି ତାର ଅଜା ଆଈ ରହନ୍ତି । ଆଉ ଯେଉଁଠାରେ ସେ ଅନେକ ମେଳା ମଉଛବ ସବୁ ଦେଖିଥିଲା ।

ପୋଙ୍ଗଲ ଆଉ ମୋଟେ ଦୁଇ ସପ୍ତାହ ଥାଏ । ଗୋପାଳର ମାଆ ତାକୁ କହିଥାଆନ୍ତି ଯେ, ତାମିଲ ମାସ 'ଥାଇ' (ପ୍ରାୟ ଜାନୁଆରୀ ମାସର ମଝାମଝି) ର ପ୍ରଥମ ଦିନ 'ପୋଙ୍ଗଲ' ପର୍ବ ପାଳନ କରାଯାଏ । ଆଉ ମଧ୍ୟ ସେ କହି ଥାଆନ୍ତି ଯେ ତାମିଲନାଡ଼ୁରେ ଧାନ କଟାକଟି ଶେଷରେ କ୍ଷେତ ବଢ଼ିବାର ଚିହ୍ନ ସ୍ୱରୂପ 'ପୋଙ୍ଗଲ' ପର୍ବ ପାଳନ କରାଯାଏ । ତାର ବାପା ଆଉ ଟିକିଏ କଥା ଯୋଡ଼ି କହିଥାଆନ୍ତି, ପୋଙ୍ଗଲଠାରୁ ସୂର୍ଯ୍ୟଙ୍କର ଉତ୍ତରାୟଣ ବା ଉତ୍ତର ଗତି ଆରମ୍ଭ ହୁଏ ।

କିନ୍ତୁ ଏ ସବୁ ନୀରସ କଥା ଜାଣିବାକୁ କିଏ ବା ଚାହିଁବ ? ଗୋପାଳ କିନ୍ତୁ ପୋଙ୍ଗଲର ବିଧିବିଧାନ ବିଷୟ ଜାଣିବାକୁ ଆଗ୍ରହୀ ଥିଲା । ସେ ଅଜାଙ୍କ ପାଖରେ ଥିବାବେଳେ ତା'ର ପିଲାଦିନର କେତେ କେତେ କଥା ଆଖି ଆଗରେ ଭାସି ଉଠୁଥିଲା । ତା'ର ମନେପଡ଼ିଲା, ପାର୍ବତୀ ନାମକ ଗାଈଟିର କଥା । ଆଈମା ତାକୁ ପୋଙ୍ଗଲ ଦିନ କେମିତି ସଜାଇ ଥାଆନ୍ତି । ଆଉ ମଧ୍ୟ ସବୁ ଘରେ ବଳଦମାନଙ୍କୁ ପୋଙ୍ଗଲ ଦିନ କେମିତି ସୁନ୍ଦର ଭାବେ ସଜାସଜି କରି ଗାଆଁ ଦାଣ୍ଡରେ ଶୋଭାଯାତ୍ରା କରି ନିଆଯାଏ, ସେ କଥା ତା'ର ମନେ ପଡ଼ିଲା । ଆଉରି ଗୋଟିଏ ମଜା କଥା ହେଉଛି ସୁଆଦିଆ 'ଶର୍କରାଇ ପୋଙ୍ଗଲ' ଖାଇବା, ଯେଉଁଟି କି ପୋଙ୍ଗଲ ଦିନ ବୁଢ଼ୀ ମାଆ ତିଆରି କରନ୍ତି । ଆଉଥରେ ଟିକିଏ ଚାଖିବାକୁ ତାର ମନ ହେଉଥିଲା । ତା' ବୋଉ ଯେଉଁ ଶର୍କରାଇ-ପୋଙ୍ଗଲ ତିଆରି କରେ ତାହା ମୋଟେ ଭଲ ନୁହେଁ ।

ତା'ପରେ ଦିନେ ସଞ୍ଜରେ ଗୋପାଳର ବାପା ଜଣାଇ ଦେଲେ, 'ଆମେ ମାସକ ପାଇଁ ଭାରତକୁ ଯାଉଥାଏଁ ।'

'ଆମେ କ'ଣ ଠିକ୍ ପୋଙ୍ଗଲ ବେଳକୁ ଯାଇ ପହଞ୍ଚି ପାରିବା ?' ଗୋପାଳ ଆଗ୍ରହରେ ପଚାରିଲା ।

ତାର ବାପା ଉତ୍ତର ଦେଲେ 'ନିଶ୍ଚୟ । ଆଈ ମାଆଙ୍କର ଶର୍କରଭ-ପୋଙ୍ଗଲ ତୁ ମନ ବୋଧ କରି ଖାଇପାରିବୁ ।' ତା'ପରେ ସେ ଗୋପାଳର ମାଆକୁ ଟିକିଏ ଆଖି ମାରିଦେଲେ । ଦୁହେଁ ହସି ହସି ଗଡିଗଲେ ।

ଗୋପାଳ ଏବଂ ତା'ର ବାପା ମାଆ ସମସ୍ତେ ପୋଙ୍ଗଲର ପୂର୍ବଦିନ ଯାଇ ଗାଆଁ ରେ ପହଞ୍ଚିଲେ । ସେତେବେଳକୁ ଖୁବ୍ ଷେର ବେଳ ହୋଇ ଥିଲେ ମଧ୍ୟ ତାଙ୍କ ଘରେ ଗହଳ ଚହଳ ଲାଗି ଯାଇଥିଲା । ଚାକରମାନେ ଘରୁ ଅଳନ୍ଧୁ ଝାଡୁଥିଲେ ଏବଂ ଦୁଇ ଜଣ ମୂଲିଆ; ଘର ଚୂନ ସଫେଇଡି କରିବା ପାଇଁ ଚୂନ ଗୋଳାଉଥିଲେ । ଗୋପାଳ ଅନୁମାନ କଲା ; ବୋଧହୁଏ ସେମାନେ ଆଜି ଘରକୁ ଆସୁ ଥିବାରୁ ଏସବୁ ସଫାସଫି କାମ ହେଉଛି; କିନ୍ତୁ ପରେ ସେ ଦେଖିଲା; ବସ୍ତିର ପ୍ରାୟ ସବୁ ଘରେ ସଫେଇଡି କାମ ଚାଲିଛି । ଏଇଟି ବରବର ପୋଙ୍ଗଲରେ ହୁଏ ।

ଗୋପାଳ କହିଲା, 'ମୁ ଭାବିଲି ପୋଙ୍ଗଲ ବୋଧେ ଆସନ୍ତା କାଲି । 'ବୁଢା ବାପା କହିଲେ, 'ଆସନ୍ତା କାଲି ହେଉଛି ଅସଲ ପୋଙ୍ଗଲ, କିନ୍ତୁ ପୋଙ୍ଗଲର ପୂର୍ବଦିନ ଓ ପରଦିନ, ଉଭୟ ଦିନର ବିଶେଷତ୍ୱ ଅଛି । ଆଜି ହେଉଛି ବୋଗି । ଏହା ବସନ୍ତ-ପରିମଳ ଦିବସ ଅଟେ । ଘରର ଯେତେ ପୁରଣା ଅଦରକାରୀ ଜିନିଷ ସେ ସବୁକୁ ଆଜି ଫୋପାଡି ଦିଆଯାଏ ବା ପୋଡି ଦିଆଯାଏ । ପୋଙ୍ଗଲର ପୂର୍ବଦିନ ରତିସାରା ଏଇ ପୋଡା ପୋଡି କାମ ଚାଲେ । ପୁଅ ପିଲାମାନେ ଏଥି ପାଇଁ ସ୍ୱତନ୍ତ୍ର ଭାବେ ତିଆରି ହୋଇଥିବା 'ବୋଗି କୋଟ୍ଟ୍' ନାମକ ଏକ ଟିକି ଡ୍ରମ ବାଜା ବଜାନ୍ତି । ଗୋପାଳ ସାଙ୍ଗେ ସାଙ୍ଗେ ତା ଅଜାକୁ ଗୋଟିଏ 'ବୋଗି କୋଟ୍ଟ୍' ମାଗିଲା ।

ଅଜା କହିଲେ, 'ବୋଗି ଓ ପୋଙ୍ଗଲ ବିଷୟରେ ଅଧିକ ଜାଣିବା ପାଇଁ ତୋର କଣ ଇଚ୍ଛା ନାହିଁ ? କାନାଡରେ ଥିବା ତୋର ସାଙ୍ଗସାଥୀମାନେ ନିଶ୍ଚେ ଆମ ପର୍ବ ପର୍ବାଣି ବିଷୟରେ ଜାଣିବାକୁ ଆଗ୍ରହୀ ହେବେ ।'

'ହଁ ଠିକ୍ କଥା;' ଗୋପାଳ କହିଲା । ଋତୁ-ଦେବତା ଇନ୍ଦ୍ରଙ୍କ ନିମନ୍ତେ ବୋଗି ପାଳନ କରାଯାଏ ଏବଂ ଏହା ନୂଆ ଋତୁ ଆଗମନର ସୂଚନା ଦିଏ । ଏଇ ଋତୁରେ ଗଛମାନଙ୍କରେ ନୂଆପତ୍ର କଅଁଳେ ଓ ଫୁଲ ଫୁଟେ । ଲୋକ-ମାନେ ନୂଆ ଜୀବନ ଆରମ୍ଭ କରିବାକୁ ଚାହାନ୍ତି । ନିଜର ପରିପାର୍ଶ୍ୱକୁ ସଫା ସୁତୁରା କରିବା ଦ୍ୱାରା ଜୀବନ ସଂପର୍କରେ ଜଣଙ୍କର ଦୃଷ୍ଟିଭଙ୍ଗୀ ଉନ୍ନତ ଓ ଉଜ୍ଜ୍ୱଳ ହୁଏ ।

ଠିକ୍ ଏତିକିବେଳେ କଥାବାର୍ତ୍ତା ମଝିରେ ଗୋପାଳ ବୟସର ପିଲାଟିଏ ଘର ଭିତରକୁ ପଶିଆସିଲା ।

'ଆରେ, ସୀନୁ ଆସିଲାରେ ।' ଅଜା କହିଲେ ଏବଂ ଦୁଇ ଜଣଙ୍କର ପରିଚୟ କରାଇଦେଲେ । ସୀନୁ ଆରପଟ ଘରେ ରହେ । ଅଜା କହିଲେ, 'ସୀନୁ, ଗୋପାଳର ବୋଗି କୋଲ୍ଟ ଦରକାର । ତାକୁ ଟିକିଏ ସାହାଯ୍ୟକର ।'

ସୀନୁ କହିଲା; 'ନିଶ୍ଚୟ,' ପିଲା ଦୁଇଟି ଏକାଠି ଘରୁ ବାହାରି ଗଲେ । ରାସ୍ତାର ମୋଡ ଉପରେ ଗୋଟିଏ ଲୋକ ମଇଁଷି ଚମରେ ତିଆରି ବୋଗି କୋଲ୍ଟ ଏବଂ ତାକୁ ପିଟିବା ପାଇଁ ଖଣ୍ଡିଏ କାଠି; ଗୋଟାକୁ ପଚାଶ ପଇସା ଦରରେ ବିକ୍ରି କରୁଥିଲା । ସୀନୁ ଏବଂ ଗୋପାଳ ପ୍ରତ୍ୟେକ ଗୋଟିଏ ଲେଖାଏଁ ସେଥିରୁ କିଣିଲେ ।

ସଂଜ ସୁଦ୍ଧା ଘର ଚୂନ ସଫେଇଡି ହୋଇଗଲା ଓ ଚଟଣା ଗୁଡିକ ଧୋଇ ପୋଛା ପୋଛି କରି ଦିଆଗଲା । ତା ପରେ ଗୋପାଳର ମାଆ ଅରୂଆ ଚାଉଳରେ ତିଆରି ବାଟି ଚଟାଣରେ ଝୋଟି ଦେଲେ । ଏହାକୁ 'କୋଲମ' କହନ୍ତି । ଏଇ ଝୋଟି ନୂଆ ଚାଉଳର ତିଆରିରେ ଅଙ୍କା ଯାଉଥିବାରୁ ଏହାର ମହତ୍ତ୍ୱ ଅଛି ।' ମାଆ ଏଇକଥା ବୁଝାଇଦେଲେ । ମାଆ ଏବଂ ବୁଢୀମାଆ ନାଲି ରଙ୍ଗର କୋଲମ ଗୁଣ୍ଡ ପାଣିରେ ମିଶାଇ ସବୁ ଘରର ଚାରିଧାରରେ ପଟି ଆଙ୍କିଲେ । ଗୋପାଳ ଠାକୁର ଠାକୁରାଣୀଙ୍କ ବିଷୟରେ ଯାହାସବୁ ପଢିଥିଲା, ସେ କଥା ମନେ ପଡିଗଲା । ସେ ଖୁସିରେ କହି ପକାଇଲା, 'ଆରେ, ଘରଟା ବର୍ତ୍ତମାନ ଇନ୍ଦ୍ରଭୁବନ ଭଳି ଦେଖାଯାଉଛି ।'

ବେଳ ବୁଡିଲା, । ଗୋପାଳ ଏବଂ ସୀନୁ ଜଲ୍‌ଦି ଜଲ୍‌ଦି ତାଙ୍କର ରାସ୍ତା ଶେଷକରି ପାଖରେ ଥିବା ଗୋଟିଏ ଖୋଲା ପଡିଆକୁ ଧାଇଁଲେ । ଆଖ ପାଖ ଘରୁ ଯେତେ ସବୁ ଭଙ୍ଗାଦୁଟା ଚିରାଫଟା ଅଦରକାରୀ ଜିନିଷ ସଂଗ୍ରହ କରାଯାଇ ଥିଲା ସେଗୁଡିକୁ ନିଆଁ ଲଗାଇ ପୋଡି ଦିଆଗଲା । ଗାଆଁର ପିଲାମାନେ ନିଜ ନିଜର ବାଜା ସହିତ ନିଆଁ ଚାରିପାଖରେ ଘେରି ରହିଲେ ଏବଂ ଖୁସିରେ ଜଣକୁ ଜଣେ ବଳି ଖୁବ୍ ଯୋରରେ ପାର୍ଟି କରିବାକୁ ଲାଗିଲେ ।

ନିଆଁ ଯେତେବେଳେ ଟିକିଏ ଲିଭି ଆସିବା ଭଳି ଜଣାଗଲା କେହି ଜଣେ ଆଉ ଦୁଇଟା ଜିନିଷ ସେଥିରେ ପକାଇ ଦେବାରୁ ତାହା ପୁଣି ଜଳିବାକୁ ଲାଗିଲା । ଫଳରେ ଗୋପାଳ ସେଦିନ ଘରକୁ ଫେରିବାବେଳକୁ ପ୍ରାୟ ରାତି ଅଧ ।

ସେଦିନ ଡେରିରେ ଶୋଇଥିବା କାରଣରୁ ଗୋପାଳ ତା' ପରଦିନ

ସକାଳେ ବିଳମ୍ବରେ ଉଠିଲା । ଘରର ସମସ୍ତେ ଗାଧୋଇ ପାଧୋଇ ନୂଆ ଲୁଗା ପିନ୍ଧି ସାରିଥିଲେ । ବୁଢାବାପା ବାରଣ୍ଡାରେ ବସି ଖବର କାଗଜ ପଢୁ-ଥିଲେ । ଠିକ୍ ଦୁଆର ମୁହଁ ଆଗରେ ଗୋଟିଏ ଖୁବ୍ ସୁନ୍ଦର ବିରାଟ କୋଲମ ବା ଝୋଟି ଅଙ୍କା ହୋଇଥାଏ ।

'ଏଇ କୋଲମଟି ବିଶେଷକରି ସୂର୍ଯ୍ୟ ମହାପ୍ରଭୁଙ୍କ ନିମନ୍ତେ ଅଙ୍କା ହୋଇଛି ।' ତୁ ଜାଣିଛୁ ଯେ, ପୋଙ୍ଗଲ ପର୍ବଟି ସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ ପାଳନ କରାଯାଏ ।' ବୁଢା ବାପା କହିଲେ ।

ଗୋପାଳ କହିଲା, 'ନା, ମୁଁ ଜାଣି ନାହିଁ ।'

'ସୂର୍ଯ୍ୟ ନ ଥିଲେ ଫସଲ ହେବ ନାହିଁ । ଫସଲ ନ ହେଲେ ଆମେ ଖାଇବାକୁ ପାଇବା ନାହିଁ । ତେଣୁ ପୋଙ୍ଗଲ ଦିନ ଆମେ ସୂର୍ଯ୍ୟଦେବତାଙ୍କୁ ଧନ୍ୟବାଦ ଜଣାଉ ।'

ଏତିକିବେଳେ ରୋଷେଇ ଘର ଆଡୁ ଗୋଟାଏ କ'ଣ ବଢିଆ ବାସନା ଭାସି ଆସିଲା । ସୁଉଁ କରି ଗୋପାଳ ବାସନା ଥୋଡାଏ ନାକରେ ଟାଣି ନେଇ କହିଲା, 'ଏ କି ବାସନା ?'

'ସେ ହେଉଛି ସୂର୍ଯ୍ୟଦେବତାଙ୍କ ପାଇଁ ଭୋଗ ।' ଗୋପାଳ ରୋଷେଇ ଘର ଭିତରକୁ ଉଙ୍କିମାରି ଚାହିଁଲା । ସେ ଦେଖିଲା, ଗୋଟାଏ ବଡ ମାଟି ହାଣ୍ଡି କାଠ ଚୂଲିରେ ବସିଛି ।

ଗୋପାଳ କହିଲା, 'ମୁଁ ଜାଣେ, ତା' ଭିତରେ କଅଣ ଅଛି । ଶର୍କ-ରାଇ-ପୋଙ୍ଗଲ ।'

ବୁଢୀ ମାଆ କହିଲେ, 'ହୋଇପାରେ; କିନ୍ତୁ ଅଗାଧୁଆ ତୋତେ ସେଥିରୁ ଟିକିଏ ବି ଛୁଆଁଇ ଦେବି ନାହିଁ ।'

ଗୋପାଳ କହିଲା, 'ତୁମେ କେମିତି ଶର୍କରାଇ-ପୋଙ୍ଗଲ ତିଆରି କର ସେ କଥା ନ କହିଲା ପର୍ଯ୍ୟନ୍ତ ମୁଁ ଗାଧୋଇବି ନାହିଁ ।

'ଠିକ୍ ଅଛି ।' ବୁଢୀ ମାଆ ଏଥିରେ ରାଜି ହେଲେ ଏବଂ ବୁଝାଇକରି କହିଲେ ଯେ, ଏଇଥି ପାଇଁ କିଣା ଯାଇଥିବା ଗୋଟିଏ ନୂଆ ହାଣ୍ଡିରେ ପୋଙ୍ଗଲ ଦିନ କ୍ଷୀର ଢଳାଯାଏ । କ୍ଷୀର ଫୁଟିବା କ୍ଷଣି ସେଥିରେ କିଛି ନୂଆ ଧାନର ଚାଉଳ ଏବଂ ଗୁଡ ପକାଯାଏ । ଗୁଡ ଖଣ୍ଡ ହୋଇଗଲେ ସୁଆଦ ପାଇଁ କିଛି ମସଲା ପକାଯାଏ । ତା'ପରେ ସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ ପୂଜା କରି ତାକୁ ପାଣି ଛଡେଇ ଦିଆଯାଏ ।'

'ଇଏ କ'ଣ ପୋଙ୍ଗଲ ପାନାଇ ?' ଗୋପାଳ ଚୂଲି ଉପରେ ବସିଥିବା ହାଣ୍ଡିକୁ ଦେଖାଇ କହିଲା ।

ବୁଢ଼ୀ ମାଆ କହିଲେ, 'ଯେ କୌଣସି ହାଣ୍ଡିରେ ପୋଙ୍ଗଲ ରନ୍ଧା-ଗଲେ, ତାହା ପୋଙ୍ଗଲ-ପାନାଇ ହୋଇଯାଏ ।'

ଗୋପାଳ ପଚାରିଲା, 'ହାଣ୍ଡି ମୁହଁ ଚାରି ପାଖରେ ସିଏ କ'ଣ ବନ୍ଧା ହୋଇଛି ?'

ବୁଢ଼ୀ ମାଆ କହିଲେ, 'ହଳଦୀ ଗଛ; ଆମେ ହଳଦୀକୁ ଶୁଭ ବୋଲି ଭାବୁ । ହଳଦୀ ଅମଳ ସହିତ ଧାନ ଅମଳର ମେଳ ଅଛି । ତେଣୁ ପୋଙ୍ଗଲ ସମୟରେ ବଜାରରେ ପ୍ରଚୁର ପରିମାଣରେ ହଳଦୀ ମିଳେ ।'

ବୁଢ଼ୀ ମାଆ ପୁଣି କହିଲେ, 'ଆଉ ଗୋଟିଏ ଜିନିଷ ମଧ୍ୟ ଏହି ସମୟରେ ଅମଳ କରାଯାଏ । ଏଇଟି ପ୍ରଚୁର ମିଳେ । ଅନୁମାନ କରତ, ସେଇଟି କଅଣ ହୋଇଥିବ ?'

ଗୋପାଳ ଖୁବ ଭାବିଲା; କିନ୍ତୁ କହିପାରିଲା ନାହିଁ ।

'ଆଖୁ, ଆଖୁ, କ'ଣ ଭୁଲି ଗଲୁଣି ?' ମାଆ କହିଲେ ।

'ହଁ, ହଁ—ଏବେ ମନେ ପଡ଼ିଲା ।' ଗୋପାଳ କହିଲା । 'ମାଆ, ମୋତେ କିଛି ଆଖୁ ଦିଅ । ମୁଁ ଅନେକ ଦିନ ହେଲା ଆଖୁ ଚାଖି ନାହିଁ ।'

—'ଠାକୁର ପୂଜା ପରେ ।'

'ମୁଁ ଠାକୁର ପୂଜା କରି ପାରିବି ?' ଗୋପାଳ ପଚାରିଲା ।

ବୁଢ଼ୀ ମାଆ ଉତ୍ତର ଦେଲେ 'ହଁ, ତୁ ଜଲ୍‌ଦି ଗାଧୁଆସି ନୂଆ ଲୁଗା ପିନ୍ଧ୍ ।'

ଗୋପାଳ ଜଲ୍‌ଦି ଜଲ୍‌ଦି ଗାଧୋଇ ପଡ଼ିଲା । ତା'ପରେ ସେ ଦେଖିଲା, ଅଜା ଓ ଆଈ କେମିତି ପୂଜା କରୁଛନ୍ତି । ଖଣ୍ଡିଏ ପଟା ଉପରେ ସୂର୍ଯ୍ୟଙ୍କର ଚିତ୍ର ଅଙ୍କା ହୋଇଥାଏ ଏବଂ ବୁଢ଼ା ବାପା ତାହାରି ଆଗରେ ବସି ପ୍ରାର୍ଥନା କରୁଥାଆନ୍ତି । ପୂଜା ପରେ କିଛି ରନ୍ଧା ପୋଙ୍ଗଲ ଗୋଟିଏ ଥାଳିଆରେ ଅଣାଗଲା ଏବଂ ବିଧି ମୁତାବକ ସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ ପାଣି ଛଡ଼ାଗଲା । ଗୋପାଳ ସହିତ ସମସ୍ତେ ସୂର୍ଯ୍ୟଙ୍କ ଆଗରେ ସାଷ୍ଟାଙ୍ଗ ହୋଇପଡ଼ି ପ୍ରାର୍ଥନା କଲେ ଏବଂ ତାଙ୍କର ଆଶୀର୍ବାଦ କାମନା କଲେ । ତା'ପରେ ଅସଲ ବେଳଟି ଆସିଗଲା । ବୁଢ଼ୀ ମାଆ ଶର୍କରାଇ ପୋଙ୍ଗଲ ବାଣ୍ଟିବା ଆରମ୍ଭ କରି ଦେଲେ । ଗୋପାଳ ସମସ୍ତଙ୍କ ଆଗରୁ ତା' ଭାଗଟିକୁ ଖାଇ ଦେଇ ବୁଢ଼ୀମାଆ ପାଖରେ ଦ୍ୱିତୀୟଥର ପାଇଁ ହାତ ପତାଇ ଦେଲା । ଏଥି ମଧ୍ୟରେ ବୁଢ଼ା-ବାପା ଆଖୁ ଗଛଟିଏ କାଟି ତାକୁ ଛୋଟ ଛୋଟ ଗୁଳା କରିବାରେ ଲାଗି-ଥାଆନ୍ତି । ସେ କେତେଖଣ୍ଡ ଗୁଳା ଗୋପାଳ ହାତକୁ ବଢ଼ାଇ ଦେଲେ ।

'ଇସ୍ କି ବଢ଼ିଆ ।' ଗୋପାଳ କେତେଖଣ୍ଡ ଚୋବେଇ, ରସ ଶୋଷି ନେଲା ଏବଂ ଛେଦା ଗୁଡ଼ିକ ଥୁ-ଥୁ କରି କାଢ଼ି ପକାଇଲା । ଠିକ୍ ଏତିକିବେଳେ ସୀନୁ ଆସି ସେଠାରେ ପହଁଞ୍ଚିଗଲା । ବୁଢ଼ାବାପା ତାକୁ ଆଦର କରି ପଚ୍ଚ-ରିଲେ, 'ପାଲ୍ ପୋଙ୍ଗିଡ଼ା ?' (ତାମିଲରେ ଏହାର ଅର୍ଥ ହେଉଛି ତୁମ ଘରେ କ୍ଷୀର ଉତୁରି ପଡ଼ିଛି ? )

ସୀନୁ କହିଲା—'ହଁ ।'

କଥାଟାର ଅର୍ଥ କିଛି ଗୋପାଳ ବୁଝି ପାରିଲା ନାହିଁ । ଅଜା ବୁଝାଇ ଦେଲେ, 'ପୋଙ୍ଗଲ ଦିନ ଜଣେ ଆଉ ଜଣକୁ ଏମିତି କହି ଅଭିବାଦନ କରେ । ଭାତ ସହିତ କ୍ଷୀର ଉତୁରି ପଡ଼ିବା ହେଉଛି ସୁଖ ଓ ସମୃଦ୍ଧିର ଲକ୍ଷଣ । ତୁ ଜାଣୁ, ପୋଙ୍ଗଲ ଶବ୍ଦର ଅର୍ଥ ହେଉଛି ଉତୁରିବା ।'

ପୋଙ୍ଗଲ ସମୟରେ ଅମାର ଭର୍ତ୍ତି ଥାଏ । ପାଗ ନିର୍ମଳ ଥାଏ, ଗଛରେ ନୂଆ ପତ୍ର କଅଁଳିଥାଏ, ପବନରେ ପକ୍ଷୀମାନଙ୍କର ସଙ୍ଗୀତ ଭାସି ଆସୁଥାଏ । ପ୍ରତ୍ୟେକ ଲୋକର ମନ ଆନନ୍ଦରେ ଭରପୂର ଥାଏ । ଏଇ ଆନନ୍ଦ ଗୋଟିଏ ସୁନ୍ଦର ମଉଜବର ରୂପ ନେଇଥାଏ ।

ପିଲା ଦୁଇଟି ଆଖୁ ଗୁଳାରେ ପକେଟ ଭର୍ତ୍ତି କରି ବାହାରେ ଖେଳ କସରତ ଦେଖିବା ପାଇ ଦୌଡ଼ି ଚାଲିଗଲେ ।

ଗୋପାଳର ହଠାତ୍ ମନେ ପଡ଼ିଗଲା, ସେ ପିଲା ଥିବାବେଳେ ହଳରେ ଲାଗୁଥିବା ବଳଦ ମାନେ କେମିତି ଗାଆଁ ଦାଣ୍ଡରେ ବୁଲୁଥିଲେ । ସେ ପଚ୍ଚରିଲା, 'ସୀନୁ, ଆଜି ବଳଦ କାହାନ୍ତି ?'

'ତୁ ଆସନ୍ତା କାଲି ମାଟ୍ଟୁ ପୋଙ୍ଗଲ ରେ ସେମାନଙ୍କୁ ଦେଖିବୁ ।' ସୀନୁ ଉତ୍ତର ଦେଲା ।

'ଆଚ୍ଛା, ମଞ୍ଜି ଭିରଟ୍ଟୁ କଅଣ ? କିଏ ଜଣେ କହୁଥିଲା, ମୁ ଶୁଣିଥିଲି ।

'ଆରେ, ସେଇଟି ମାଟ୍ଟୁ ପୋଙ୍ଗଲରେ ହୁଏ ଏବଂ ଭାରି ଗୋଟାଏ ମଜା ଘଟଣା । ମାଲିକମାନେ ସେମାନଙ୍କର ବଳଦମାମଙ୍କୁ ସୁନ୍ଦର ଭାବରେ ସଜେଇ, ବେକରେ ଗୋଟିଏ ପଇସା ମୁଣି ବାନ୍ଧି, ବାହାରକୁ ଛାଡ଼ି ଦିଅନ୍ତି । ଯିଏ ବଳଦକୁ ଧରି ପାରିଲା, ସେ ପଇସାରେ ତା'ର ଅଧିକାର ।'

ଗୋପାଳ କହିଲା—'ଭାରି ତ ମଜା ହେଉଥିବ । କାଲିଯାଏ ଅପେକ୍ଷା କରିବାକୁ ମୋର ଧୈର୍ଯ୍ୟ ନାହିଁ ।' ଘରେ ପହଞ୍ଚି ମଟ୍ଟୁ ପୋଙ୍ଗଲ ବିଷୟରେ ଟିକିନିକି ଜାଣିବା ପାଇଁ ବୁଢ଼ା ବାପାଙ୍କୁ ବିରକ୍ତ କଲା ।

ବୁଢ଼ା ବାପା କହିଲେ—'ଗୋରୁଗାଈମାନେ ବର୍ଷ ସାରା ମଣିଷର ସେବା କରୁଥିବାରୁ, ସେମାନଙ୍କୁ ଏଇଦିନ କୃତଜ୍ଞତା ଜଣାଯାଏ । କାଲି

ତୋର ବୁଢୀ ମାଆ ଆମ ପାର୍ବତୀ ଗାଈ ମୁଣ୍ଡରେ ହଳଦୀ ଓ କୁଙ୍କୁମ ବୋଳିବ । ତା' ବେକରେ ଗୋଟିଏ ଫୁଲମାଳ ପିନ୍ଧାଇବ ଏବଂ ତାକୁ ପୂଜା କରିବ । ତା'ପରେ ତାକୁ ପୋଙ୍ଗଲ ଖୁଆଇବ ।'

ଗୋପାଳ କଥା ଛଡେଇ ନେଇ କହିଲା—'କିନ୍ତୁ ବଳଦମାନଙ୍କ ବିଷୟରେ ସୀନୁ କଅଣ ସବୁ କହୁଥିଲା ?'

'ମୁଁ ସେଇକଥା କହୁଛି ।' ବୁଢାବାପା ଉତ୍ତର ଦେଲେ । 'ପୋଙ୍ଗଲ ଗୋଟିଏ ଅମଳ ପର୍ବ ହୋଇଥିବାରୁ ମୁଖ୍ୟତଃ ଏହା ଚାଷୀମାନଙ୍କ ସହିତ ସଂପୃକ୍ତ । ଚାଷୀ କାମରେ ବଳଦ ମାନେ ସାହାଯ୍ୟ କରୁଥିବାରୁ ସେଇ-ମାନଙ୍କୁ କେନ୍ଦ୍ର କରି ମାଟ୍ଟୁ ପୋଙ୍ଗଲ ପାଳିତ ହୁଏ । ମଞ୍ଜି ବିରଟ୍ଟରେ ବଳଦମାନେ ହେଉଛନ୍ତି ମୁଖ୍ୟ ।

* * *

ମାଟ୍ଟୁ ପୋଙ୍ଗଲ ଦିନ ସକାଳ ହେଲା । ଗୋପାଳ ତାର ବୁଢୀ ମାଆ ସହିତ ଉଠି ପଡିଲା ଏବଂ ଜଲ୍‌ଦି ଯାଇ ଗାଧୋଇ ଆସିଲା । ବୁଢୀମାଆ ପାର୍ବତୀକୁ କିପରି ପୂଜା କଲେ ଏବଂ ପୋଙ୍ଗଲ ଖାଇବାକୁ ଦେଲେ, ସେ ସବୁ ଦେଖିଲା । ତା'ପରେ ସେ ସୀନୁ ଘରକୁ ଧାଇଁଗଲା । ସେଠାରୁ ସେ ଓ ସୀନୁ ପାଖରେ ଥିବା ଚାଷ ଘରକୁ ଦୌଡିଲେ । ଚାଷ ଘରେ ସେତେବେଳକୁ କାମର ଧୂମ ଲାଗିଯାଇଥାଏ । ଦୁଇଟି ବଡ ବଡ ମାଟି ହାଣ୍ଡିରେ ପୋଙ୍ଗଲ ରନ୍ଧା ହୋଇ ରଖାଯାଇଥାଏ ଏବଂ ଗୋବରରେ ତିଆରି ଗୋଟିଏ ଛୋଟ ଗଣେଶ ମୂର୍ତ୍ତି ଆଗରେ ବିଧି ମୁତାବକ ଭୋଗ ଲଗାଯାଉଥାଏ । ଗୋବର ଗଣେଶଟିକୁ ନାନା ପ୍ରକାର ପତ୍ର ଫୁଲରେ ସଜାଯାଇଥାଏ । ଚଟାଣରେ ଗୋଟିଏ ବିଶେଷ ଧରଣର ଝୋଟି ଅଙ୍କା ଯାଇଥାଏ । ନାଲି ମୁରୁଜରେ ତାହା ସଜା ଯାଇଥାଏ ଏବଂ ତାଆରି ଉପରେ ପୋଙ୍ଗଲ ହାଣ୍ଡି ରଖା ହୋଇଥାଏ । ହାଣ୍ଡି ପାଖରେ କିଛି ହଳଦୀ, ଅଦା, ଏବଂ ଆଖୁ ରଖାଯାଇ-ଥାଏ । ଏ ସବୁ ଗଣେଶଙ୍କୁ ଅର୍ପଣ କରାଯାଇଥାଏ । ଆଉ ମଧ୍ୟ ସେଠାରେ ହଳଦୀ ରଙ୍ଗର କେତୋଟି ମାଳ ଏବଂ ଖଣ୍ଡିଏ ବାଡି ଥାଏ ।

ସେ ଆଡକୁ ହାତ ଦେଖାଇ, ଗୋପାଳ ପଚାରିଲା, 'ସେ ସବୁ କଅଣ ?'

ସୀନୁ କହିଲା—'ଏଇ ବାଡି ଖଣ୍ଡିକର ନାଆଁ ହେଉଛି 'ଆଦାଲି କୋଲ୍‌ମ୍ବୁ' ବା ପାଞ୍ଚଣ । ଚାଷୀମାନେ ବଳଦ ଅଡାଇବାରେ ଏହାକୁ ବ୍ୟବ-ହାର କରନ୍ତି । ଆଜି ଦିନରେ ବଳଦମାନଙ୍କର ବେକରେ ସଜାଇବା ପାଇଁ ସ୍ୱତନ୍ତ୍ର ଭବେ ତାଳପତ୍ରରେ ଏଇ ପଟି ଗୁଡିକ ତିଆରି ହୋଇଛି ।'

ତା'ପରେ ଆଗରୁ କିଣାଯାଇଥିବା ନୂଆଁ ଲୁଗାପଟା ସମସ୍ତେ ପିନ୍ଧିଲେ ।

କୃଷ କୃଷିଜୀବୀମାନେ ଶଗଡ଼, ଲଙ୍ଗଳ ଓ ଅନ୍ୟାନ୍ୟ କୃଷୋପକରଣ ଗୁଡ଼ିକ ସଫାସୁତୁରା କରି ସେଥିରେ ଚିତ୍ର କଲେ । ବଳଦମାନଙ୍କର ଶିଙ୍ଗ ସବୁ କାଟି ମୁନିଆଁ କରାଗଲା ଓ ସେଥିରେ ରଙ୍ଗ ବୋଳା ଗଲା । ଶିଙ୍ଗ ଆଗରେ ଧାତୁ ନିର୍ମିତ ଟୋପରମାନ ପିନ୍ଧାଇ ଦିଆଗଲା ।

ହଠାତ୍ ସେମାନେ ଦାଣ୍ଡରେ ଖୁବ୍ ଗୋଟିଏ କୋଳାହଳ ଶୁଣିବାକୁ ପାଇଲେ । ମଞ୍ଜି ବିରଟ୍ଟ ଆରମ୍ଭ ହୋଇଯାଇଥିଲା । ଦୁହେଁ ମଜା ଦେଖିବା ପାଇଁ ଧାଇଁଲେ । ବଳଦମାନଙ୍କ ଶିଙ୍ଗରେ ମାଟିଆ ରଙ୍ଗ ବୋଳି ଏବଂ ଘଣ୍ଟି, ଘୁଙ୍ଗୁର ପିନ୍ଧାଇ କେତେକ ଯୁବକ ସେମାନଙ୍କୁ ଦାଣ୍ଡ ମଝିରେ ଅଡ଼େଇ କରି ନେଉ ଥାଆନ୍ତି । ମଝିରେ ମଝିରେ କୌଣସି ଯୁବକ ଗୋଟିଏ ବଳଦକୁ ଅକ୍ତିଆର କରି ନେଇ କୌଶଳରେ ତା' ପିଠିରେ ବସିଯାଇ କିଛି ବାଟ ଚାଲି ଯାଉଥାଆନ୍ତି ଏବଂ ବଳଦ ବେକରେ ବନ୍ଧା ହୋଇଥିବା ପଇସା ମୁଣିକୁ ଖୋଲି ନେଉ ଥାଆନ୍ତି । କିନ୍ତୁ ସବୁ ବଳଦଙ୍କୁ ଆୟତ୍ତ କରିବା ସହଜ ଜଣାପଡ଼ୁ ନଥାଏ । କେତେଗୁଡ଼ିଏ ମାରଣା ଥାଆନ୍ତି, ତାଙ୍କ ପିଠିକୁ କେହି ଉଠିବାକୁ ଚେଷ୍ଟା କଲେ ବା ବେକରେ ବନ୍ଧାଥିବା ପଇସା ମୁଣିକୁ ଛିଡ଼ିବାକୁ ଲାଗିଲେ, ସେମାନେ ତାଙ୍କୁ ଫୋପାଡ଼ି ଦିଅନ୍ତି । ଫୁଙ୍ଗୁଳା ଦେହରେ ଏବଂ ଖାଲି ହାତରେ ସେଇ ଲୋକମାନେ ଏକା ଏକା ବା ଦୁଇ ତିନିଜଣ ଏକାଠି ମିଶି ବଳଦମାନଙ୍କ ସାଙ୍ଗରେ କସରତ କରୁ ଥାଆନ୍ତି । ଫଳରେ ସେମାନଙ୍କର ଦେହ ଝାଳରେ ଜୁଡ଼ୁବୁଡ଼ୁ ହୋଇଥାଏ ଏବଂ ସେଥିରେ ଖରାପଡ଼ି ଚକ୍ ଚକ୍ କରୁଥାଏ । ଗୋପାଳ ଏ ଦୃଶ୍ୟ ଦେଖି ଛାନିଆ ହୋଇଗଲା । ଆଗରୁ ସେ ଏଭଳି ଯେତେ ଦୃଶ୍ୟ ଦେଖିଥିଲା ତା' ଭିତରେ ଏଇଟି ସବୁଠୁ ଚିତ୍ତାକର୍ଷକ ।

ସଞ୍ଜବେଳେ କୃଷୀ ପରିବାରର ସ୍ତ୍ରୀଲୋକମାନେ ଏକାଠି ଦଳ ଧରି ଯାଇ ଖୋଲାରେ ଥିବା ଗାଆଁ ଠାକୁରାଣୀଙ୍କ ପାଖରେ ପୂଜା କରିବାର ପିଲା ଦୁହେଁ ଦେଖିଲେ । ଯା'ପରେ ଶଗଡ଼-ଦୌଡ଼ ହେଲା । କି ପିଲା, କି ବୁଢ଼ା, ସ୍ତ୍ରୀ ପୁରୁଷ ସମସ୍ତେ ଯାଇ ସେଠାରେ ଏକାଠି ହେଲେ ।

ଗୋପାଳ କହିଲା, 'ଭାଇ, ପୋଙ୍ଗଲ ଏତେ ମଜା ବୋଲି ମୁଁ ଜାଣି ନ ଥିଲି । ତୁମକୁ ଧନ୍ୟବାଦ ସୀନୁ ।'

'ତୁମକୁ ଧନ୍ୟବାଦ ଦିଆଯିବା ଉଚିତ । କାରଣ ତୁମ ଯୋଗୁ ମୁଁ ଆଜି ପୁଣି ଥରେ ପୋଙ୍ଗଲ ବିଷୟରେ କେତେ କଥା ଜାଣିଲି ।'

ଆଦଭାନ୍ ସୁନ୍ଦରମ୍

# ହୋଲି

ତୁମେ ଗାଆଁରେ ଥାଅ ବା ସହରରେ ଥାଅ, ବସନ୍ତ ଋତୁରେ କିଛିଦିନ ପାଇଁ ଟିକେ ସାବଧାନରେ ଚଲାବୁଲା କରିବା ଉଚିତ । କାରଣ ତୁମେ ଯଦି ଅନ୍ୟମନସ୍କ ଭାବେ କୁଆଡ଼େ ବୁଲାବୁଲି କରିବ, ତେବେ ହଠାତ୍ କୌଣସି କୋଠାଘରର ବାଲ୍‌କୋନିରୁ, ଛାତ ଉପରୁ ବା ଘର ଉହାଡ଼ରୁ ରଙ୍ଗପାଣି ଭରା ଗୋଟିଏ ବେଲୁନ୍ ଆସି ତୁମ ଲୁଗା ଉପରେ ପଡ଼ି ଫାଟି ଯିବ । ନଚେତ୍ ଗୋଟିଏ ଅଦୃଶ୍ୟ ହାତ ଠିକ୍ ତୁମକୁ ଲକ୍ଷ୍ୟ କରି ରଙ୍ଗପାଣି ପିଚକାରୀ ମାରି ଦେବ । ଯଦି ତୁମେ ବସ୍‌ରେ ଯାଉଥାଅ ତେବେ ଝରକାଗୁଡ଼ିକ ବନ୍ଦ କରି-ଦେବା ବୁଦ୍ଧିମାନ କାର୍ଯ୍ୟ ହେବ । ତା' ନ ହେଲେ ତୁମେ ଯଦି ସାବଧାନ ନ ଥିବ, ତେବେ ଦେଖିବ ତୁମ ଲୁଗାପଟା ନାନାରଙ୍ଗରେ ଚିତ୍ରିତ ହୋଇ ଯାଇଛି ।

ହୋଲି ବେଳେ ସବୁ ମାଫ୍ । କାରଣ ହୋଲି ହେଉଛି ଗୋଟିଏ ମଉଜ ମଜ୍‌ଲିସର ଦିନ । ପରସ୍ପରକୁ ଭଲ କରି ଜାଣିବା ଏବଂ ପିଛିଲା ଦିନର ଦୁଃଖକୁ ଭୁଲିଯିବା ପାଇଁ ଏହା ଗୋଟିଏ ଅବକାଶ । ସ୍ତ୍ରୀ, ପୁରୁଷ, ପିଲାଛୁଆ ପ୍ରତ୍ୟେକର ଲୁଗାପଟା ରଙ୍ଗପାଣିରେ ଜୁଡ୍‌ବୁଡ୍ ଏବଂ ମୁହଁରେ ଅବିରଗୁଣ୍ଡ । ରାସ୍ତାଘାଟରେ ଝାଞ୍ଜ, ମୃଦଙ୍ଗ ବଜାଇ ଏବଂ ହୋଲି ଗୀତ ଗାଇ ନାଚକୁଦ କରୁଥିବା ଦଳଦଳ ଲୋକଙ୍କର ଭିଡ଼ । ସେମାନେ ଜଣକ ପାଖରୁ ଆଉ ଜଣକ ପାଖକୁ ଗଲାବେଳେ ମୁହଁରେ ଗୋଲାପୀ ଅବିର ବୋଳା ବୋଳି ହୋଇ ପରସ୍ପର କୋଳାକୋଳି ହୁଅନ୍ତି । ଗଳି କନ୍ଦି ସବୁଠେଇଁ ଅବିର ଗୁଣ୍ଡ ଉଡ଼ି କୁହୁଡ଼ି ଭଳି ଦେଖାଯାଉଥାଏ । ଆନନ୍ଦ ଧ୍ୱନିରେ ଆକାଶ ଉଚ୍ଛୁଳି ପଡ଼ୁଥାଏ—

ହୋଲି ଭାଇ, ହୋଲି
ହୋଲି-ମାଆ କଲ୍ୟାଣ ଦିଏ
ଆମ ପିଲାଏ ଦୀର୍ଘଜୀବୀ ହୁଅନ୍ତୁ ।

ଭାରତର ଯେ କୌଣସି ଗାଆଁ ବା ସହରରେ ତୁମେ ଏଭଳି ଦୃଶ୍ୟ ଦେଖିବାକୁ ପାଇବ । ଦୀପାବଳୀ ଓ ଦଶହରା ଭଳି ହୋଲି ହେଉଛି ଭାରତର ଏକ ପ୍ରଧାନ ପର୍ବ ଏବଂ ଏହା ଦକ୍ଷିଣ ଭାରତର କେତେକ ଅଞ୍ଚଳକୁ ଛାଡ଼ି ଦେଲେ ଦେଶର ଆଉ ସବୁଆଡ଼େ ପାଳିତ ହୁଏ । ଏପରିକି ବିଦେଶରେ

ରହୁଥିବା ଭାରତୀୟମାନେ ମଧ୍ୟ ଖୁବ ଆଗ୍ରହ ଉତ୍ସାହର ସହିତ ଏହାକୁ ପାଳନ କରନ୍ତି । ଏଇ ଉତ୍ସବରେ କି ପିଲା, କି ବୁଢା, କି ଧନୀ, କି ଦରିଦ୍ର କିଛି ଭେଦଭାବ ନ ରଖି ସମସ୍ତେ ଏକ ହୋଇଯାଆନ୍ତି ।

ପ୍ରଥମତଃ ହୋଲି ହେଉଛି ଗୋଟିଏ ବସନ୍ତ ଉତ୍ସବ । ଏହା ନୂଆ ଜୀବନର ପ୍ରତୀକ । ଗଛ ଡାଳରେ ନୂତନ ପତ୍ର କଅଁଳେ, ବହୁ ଅଞ୍ଚଳରେ ସୋରିଷ ଫୁଲ ଫୁଟେ, ବାଡ଼ି ବଗିଚାରେ ନାନା ରଙ୍ଗର ସମାବେଶ ଘଟେ ଏବଂ ସବୁଗୁଡ଼ିକ ବେଶ ରମଣୀୟ ଦିଶେ ।

ଶୀତ ଭୟରେ ଘର ଭିତରେ ବାନ୍ଧି ହୋଇ ରହିଥିବା ମନୁଷ୍ୟ ତଥା ଇତର ପ୍ରାଣୀମାନେ ପୃଥିବୀର ନୂତନ ରଙ୍ଗ ଓ ନୂତନ ରୂପ ଦେଖିବାକୁ ବାହାରି ପଡନ୍ତି । ମନରେ ଆଶା ଆକାଂକ୍ଷା ପୂରିଯାଏ ଏବଂ ଶ୍ରଦ୍ଧାଭାବ ଜାତ ହୁଏ । ହୋଲି ହେଉଛି ଋତୁ ପରିବର୍ତ୍ତନର ସୂଚନା । ଏଇଠୁ ଗ୍ରୀଷ୍ମ ଋତୁ ଆରମ୍ଭ ହୋଇଯାଏ ଏବଂ ବସବାସ ନ ଥିବା ବିଚରା ଗରିବ ଲୋକମାନଙ୍କର ଶୀତ କଷ୍ଟ ଦୂର ହୋଇଯାଏ । ଏକ ନୂତନ ଜୀବନର ଆରମ୍ଭ ହୁଏ । ଏହାକୁ ଆମେ ଆନନ୍ଦର ସହିତ ସ୍ୱାଗତ କରିବା ନାହିଁ କାହିଁକି ?

କୃଷୀମାନଙ୍କର ଏଇଟି ହେଉଛି ଗୋଟିଏ ଅମଳ ପର୍ବ । ଏତିକି-ବେଳେ ଶୀତଦିନିଆ ରବିଫସଲ ଅମଳ ହୁଏ । ଗହମ ଶିଂସା ପାକଳ ହୋଇ ସୁନେଲି ରଙ୍ଗ ଦେଖାଯାଏ । କୃଷୀର ମନ ଆଶା ଓ ଆନନ୍ଦରେ ପୂରିଯାଏ । ଏହା ସାଙ୍ଗେ ସାଙ୍ଗେ ହୋଲି ନୂଆ ବର୍ଷ ଆରମ୍ଭର ସୂଚନା ଦିଏ । ଭାରତୀୟ ପାଞ୍ଜି ଅନୁସାରେ ହୋଲି-ଅଗ୍ନି ଜଳା ଯିବାର ଦୁଇଦିନ ପରେ ନବବର୍ଷ ଆରମ୍ଭ ହୁଏ । ଖ୍ରୀଷ୍ଟିୟାନ କ୍ୟାଲେଣ୍ଡର ଅନୁଯାୟୀ ହୋଲି ଫେବୃୟାରୀ-ମାର୍ଚ୍ଚ ମାସର ମଝାମଝି ପଡେ ।

ହୋଲି ପର୍ବ ଶିବଠାକୁରଙ୍କ ସହିତ ସଂପୃକ୍ତ ଏବଂ ଏହା ତାଙ୍କ ବିବାହ ଶୋଭାଯାତ୍ରା ପରର ବିଶ୍ରାମ ଅଟେ । ମୃଦଙ୍ଗ ବଜାଇ ଗୀତ ଗାଇ ନାଚିବା ତଥା ମୁହଁରେ ଅବିର ବୋଳିବା ଏବଂ ଲୁଗାରେ ରଙ୍ଗ ପିଚକାରୀ ଓ ଅବିର ପକାଇବା ଇତ୍ୟାଦି ଶିବ ଠାକୁରଙ୍କ ଉଦ୍ଦେଶ୍ୟରେ କରାଯାଏ ।

ହୋଲି ପର୍ବରେ ଆଉ ଗୋଟିଏ ଜଣାଶୁଣା କିମ୍ବଦନ୍ତୀ ଅଛି । ତାହା ହେଉଛି ପ୍ରହଲ୍ଲାଦ ଏବଂ ତାର ବାପା ହିରଣ୍ୟକଶିପୁ ମଧ୍ୟରେ ଘଟିଥିବା ବିବାଦ । କଥିତ ଅଛି ଯେ, ହିରଣ୍ୟକଶିପୁ ଥିଲା ଗୋଟିଏ ପରାକ୍ରମଶାଳୀ ଅସୁର ରାଜା । ଦେବାସୁର ଲଢେଇରେ ହିରଣ୍ୟକଶିପୁ ଦେବତାମାନଙ୍କୁ ପରାସ୍ତ କରି ନିଜେ ଜୟଯୁକ୍ତ ହୋଇଥିଲା । ଫଳରେ ତା'ର ଗର୍ବ ଏତେ ବଢିଗଲା ଯେ, ତା ରାଜ୍ୟରେ ଭଗବାନଙ୍କର ନାଆଁ ଧରିବା ନିଷେଧ ବୋଲି

କହି ପ୍ରଜାମାନଙ୍କ ଉପରେ ସେ ଏକ ଆଦେଶନାମା ଜାରି କରି ଦେଲା । ସେ ଧମକ ଦେଲା ଯେ ଏଇ ଆଦେଶକୁ ଯିଏ ଅମାନ୍ୟ କରିବ ତାକୁ କଠିନ ଦଣ୍ଡରେ ଦଣ୍ଡିତ କରାଯିବ । ତେଣୁ ରାଜ୍ୟର ଲୋକମାନେ ଏଣିକି ଭଗବାନଙ୍କୁ ପୂଜା ନ କରି ରାଜାଙ୍କୁ ପୂଜା କରିବାକୁ ଲାଗିଲେ ।

ହିରଣ୍ୟକଶିପୁର ପୁଅ ପ୍ରହଲ୍ଲାଦ ଥିଲା ଜଣେ ହରିଭକ୍ତ । ସେ ପିତାଙ୍କର ଆଦେଶକୁ ନ ମାନି ପୂର୍ବପରି ଭଗବାନଙ୍କୁ ପୂଜା କରିବାକୁ ଲାଗିଲା । ବାପା ତା' ପ୍ରତି ଯେତେ ପ୍ରକାର କଠିନ ଦଣ୍ଡର ବ୍ୟବସ୍ଥା କଲେ, କେଉଁଥିରେ ହେଲେ ତାର କିଛି କ୍ଷତି ହେଲା ନାହିଁ ।

ହିରଣ୍ୟକଶିପୁର ଗୋଟିଏ ଭଉଣୀ ଥିଲା, ତାର ନାମ 'ହୋଲିକା' । ହୋଲିକାକୁ ଗୋଟିଏ ବର ମିଳିଥିଲା ଯେ, ନିଆଁ ତାକୁ ପୋଡ଼ି ପାରିବ ନାହିଁ । ହିରଣ୍ୟକଶିପୁ ତାକୁ ଆଦେଶ ଦେଲା, ସେ ପ୍ରହଲ୍ଲାଦକୁ କାଖରେ ଧରି ଗୋଟିଏ ଜଳନ୍ତା ନିଆଁ ଗଦା ଭିତରେ ପଶିଯିବ । ସେ ସେଇଆ କଲା, କିନ୍ତୁ ପ୍ରହଲ୍ଲାଦ ନିଆଁ ଭିତରୁ ନିଖୁଣ ଅବସ୍ଥାରେ ବାହାରି ଆସିଲା; ମାତ୍ର ହୋଲିକା ନିଜେ ସେଥିରେ ପୋଡ଼ି ପାଉଁଶ ହୋଇଗଲା । କଥିତ ଅଛି ଯେ, ଏଇ ବିଚିତ୍ର ଘଟଣାକୁ ମନେ ପକାଇବା ପାଇଁ ହୋଲି ପାଳନ କରାଯାଏ ଏବଂ ହୋଲି ଅଗ୍ନି ଜଳାଯାଏ । ହୋଲିର ଦିନକ ଆଗରୁ ଲୋକମାନେ କାଠିକୁଟା ସଂଗ୍ରହ କରି ଗୋଟିଏ ଜାଗାରେ ତାକୁ ଗଦେଇଥାଆନ୍ତି । ହୋଲି ଦିନ ରାତିରେ ସେମାନେ ସେଇ ଗଦା ଚାରିପାଖରେ ରୁଣ୍ଡ ହୁଅନ୍ତି । ବାଜା ବଜାଇ ନାଚନ୍ତି ଏବଂ ତା' ସାଙ୍ଗେ ସାଙ୍ଗେ କାଠ ଗଦାରେ ନିଆଁ ଲଗାଇ ଦିଅନ୍ତି । ପିଲାମାନେ ନିଆଁ ଚାରି ପାଖରେ ବୁଲି ବୁଲି ଗୋଟିଏ ଗୀତ ଗାଆନ୍ତି; ଯାହାର ଅର୍ଥ ହେଉଛି—

ହୋଲି ମାଆ, ଆମେ ମାଗୁଛୁ ତୁମ କଲ୍ୟାଣ
ଆମକୁ ନିୟୁତ ବର୍ଷ ପରମାୟୁ ଦିଅ ।

ହୋଲିର କେତେ ଦିନ ଆଗରୁ ସଜବାଜ ଆରମ୍ଭ ହୋଇଯାଏ । ଘରଗୁଡ଼ିକ ଚୂନ ସଫେଇତି କରାଯାଏ । ଦୁଆର ମୁହଁରେ ରଙ୍ଗୀନ ଚିତା ଅଙ୍କାଯାଏ । ଆଗେ ଗୋଟିଏ ପ୍ରକାର ଫୁଲ ଆଣି ତାକୁ ରଙ୍ଗ ଉଦ୍ଦେଶ୍ୟରେ ବ୍ୟବହାର କରାଯାଉଥିଲା; ଆଜିକାଲି କିନ୍ତୁ ରଙ୍ଗଗୁଣ୍ଡ ଏବଂ ପିଚକାରୀ ସହଜରେ ମିଳିଯାଉଛି । ମଫସଲର ଅନେକ ପରିବାରରେ ଅରୁଆ ଚାଉଳ ଏବଂ ହଳଦୀକୁ ଏକାଠି ଚୂରି ମୁରୁଜ ତିଆରି କରାଯାଏ ଏବଂ ପିଲାମାନେ ନିଜେ ନିଜେ ବାଉଁଶ ନଳରେ ପିଚକାରୀ ତିଆରି କରନ୍ତି । ଏଇ ବାଉଁଶ ନଳର ଗୋଟିଏ ମୁଣ୍ଡରେ ଛିଦ୍ରଟିଏ ଥାଏ ଏବଂ ଖଣ୍ଡିଏ ଗଣ୍ଡି ଲଗା କାଠି

ଅଗରେ ଛିଷାକନା ବିଛି ଗୁଡେଇ ତାକୁ ନଳୀର ଅନ୍ୟ ପଟେ ଭର୍ତ୍ତି କରି ସ୍ୱପଦଣ୍ଡ ରୂପେ ବ୍ୟବହାର କରଯାଏ ।

କେତେକ ଅଞ୍ଚଳରେ ହୋଲି ଉପଲକ୍ଷେ ଏକ ସ୍ୱତନ୍ତ୍ର ଧରଣର ନାଚ ହୁଏ । ଏଥିପାଇଁ କାଠରେ ସାନବଡ ଦୁଇଖଣ୍ଡ କାଠି ତିଆରି କରଯାଏ ଏବଂ ଏହାର ଗୋଟିଏ ମୁଣ୍ଡରେ ହଳଦୀ ରଙ୍ଗ ଦିଆଯାଏ । ସାନ କାଠିଟିର ଲମ୍ବ ପ୍ରାୟ ପଚିଶ ସେଣ୍ଟିମିଟର ଓ ବଡ଼ କାଠିର ଲମ୍ବ ପ୍ରାୟ ଅଧମିଟର । କାଠ ଉପରୁ ଛେଲିଟିକୁ ଛଡେଇ ବାହାର କରି ଦିଆଯାଏ ଏବଂ ଏହାକୁ ନାନା ରଙ୍ଗରେ ରଙ୍ଗେଇ ଦିଆଯାଏ । ନାଚବାଲାମାନେ ଗୋଟିଏ କାଠିରେ ଆଉ ଗୋଟିଏ କାଠି ପିଟି ଘୂରି ଘୂରି ନାଚନ୍ତି । ଗୁଜୁରଟରେ ଏଇ କାଠି ନାଚ ହୋଲିର ପ୍ରଧାନ ଆକର୍ଷଣ ରୂପେ ବିବେଚିତ ହୁଏ ।

ଅନ୍ୟାନ୍ୟ ପର୍ବପର୍ବାଣି ଭଳି ହୋଲିରେ ଭଲ ଭଲ ଖାଦ୍ୟ ଜିନିଷ ରନ୍ଧାଯାଏ । ହୋଲିର ଅନେକ ଦିନ ପୂର୍ବରୁ ଘିଅ, ଗୁଡ, ଚିନି, କିସ୍‌ମିସ୍, ବାଦାମ, ପେସ୍ତା, ମଇଦା ଇତ୍ୟାଦି ଆଣି ଭଣ୍ଡାରରେ ସାଇତା ଯାଇଥାଏ । ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ଜାତିର ପିଠାପଣା କରଯାଏ । କିନ୍ତୁ ମାଲପୁଆ ସମସ୍ତଙ୍କ ପାଖରେ ଜଣାଶୁଣା । ଉତ୍ତର ପ୍ରଦେଶରେ ସବୁଠୁ ପ୍ରିୟ ହେଉଛି ମଇଦା ତିଆରି 'ଗୁଜିଆ' ଓ 'ପାପ୍‌ରି' । ମହାରାଷ୍ଟ୍ରରେ 'ପୁରନ୍ ପୋଲି' ନାମକ ଏକ ପ୍ରକାର ମିଠା ପାଉଁରୋଟି ତିଆରି କରଯାଏ । ଗୁଜରଟରେ ଜୋଆର ଅଟାରେ ତିଆରି 'ଥାନି' ବେଶ୍ ଲୋକପ୍ରିୟ । ଆଜିକାଲି ସହରୀ ଲୋକେ ମିଠା ଜିନିଷ ବଜାରରୁ କିଣି ନେବାକୁ ପସନ୍ଦ କରୁଛନ୍ତି; କିନ୍ତୁ ଗାଆଁ ଗହଳିରେ ହୋଲି ପାଇଁ ଘରେ ପିଠା ପଣା ତିଆରି କରଯାଏ ।

ହିମାଚଳ ପ୍ରଦେଶର ଗୋଟିଏ ଗାଆଁରେ ମୁଁ ଦେଖିଥିବା ହୋଲି ଉତ୍ସବ ମୋର ଟିକିନିକି ମନେ ଅଛି । ଗାଆଁ ଚଉପାଢୀରେ ମସିଣା ସବୁ ବିଛେଇ ଦିଆଯାଏ । ବିରାଟ ବିରାଟ ଥାଳିରେ ଗୋଲାପୀ ଅବିର ଭର୍ତ୍ତିକରି ରଖାଯାଇଥାଏ । ଗାଆଁର ବୟସ୍କ ଲୋକମାନେ ସମସ୍ତେ ସେଠାରେ ଉପସ୍ଥିତ ଥାଆନ୍ତି । ହାରମୋନିୟମ, ଡୁବି,ତବଲା ଇତ୍ୟାଦି ବଜାଇ ସେମାନେ ଏକାଠି ଗୀତ ଗାଆନ୍ତି, 'ମୋ ସଙ୍ଗେ କିଏ ଖେଳିବ ହୋଲି ହେ ପ୍ରିୟ, କହ ମୋତେ କିଏ ?' ତା'ପରେ ସେମାନେ ଏକାଠି ଧାଡି ବାନ୍ଧି ନାଚି ନାଚି ଏବଂ ଗୀତ ଗାଇ ଗାଇ ଘରକୁ ଘର ବୁଲି ଯାଆନ୍ତି । ପିଲାଠାରୁ ବୁଢା ପର୍ଯ୍ୟନ୍ତ ସମସ୍ତେ ସାନ ବଡ ଭେଦଭାବ ଭୁଲି ପରସ୍ପର ଅବିର ବୋଳା ବୋଳି ହୁଅନ୍ତି ଏବଂ ପିଚକାରୀ ମାରନ୍ତି । ଦଳଦଳ ହୋଇ ସ୍ତ୍ରୀଲୋକ 'ଦହୋଡ' ନାମକ ଗୋଟିଏ ପ୍ରକାର ଗଛକୁ ପୂଜା କରନ୍ତି । ପ୍ରତ୍ୟେକ ଲୋକ ରଙ୍ଗୀନ କାଠି

ଧରି ନାଚନ୍ତି । ଦିନସାରା ହୋଲି ଗୀତରେ ପାହାଡ଼ ପ୍ରତିଧ୍ୱନିତ ହୋଇ ଉଠେ ।

ସଞ୍ଜବେଳେ ସମସ୍ତ ଗ୍ରାମବାସୀ ପ୍ରଧାନ ଚଉପାଢ଼ୀଠାରେ ରାମ, କୃଷ୍ଣ ଶିବ, ପାର୍ବତୀ, ହନୁମାନ ଓ ଗଣେଶ ପ୍ରଭୃତି ମୂର୍ତ୍ତି ଦର୍ଶନ କରିବାକୁ ଆସି ରୁଣ୍ଡ ହୁଅନ୍ତି । ବେଳ ବୁଡ଼ିବା ପରେ ମଧ୍ୟ ଏଇ କାମ ଚାଲେ । ପ୍ରାୟ ରାତି ଦଶଟା ବେଳକୁ ହୋଲି ଅଗ୍ନି ଜଳାଯାଏ ଏବଂ ସବୁଗୁଡ଼ିକ ରଙ୍ଗୀନ କାଠି ଏବଂ ପିଚକାରୀ ନିଆଁକୁ ଫିଙ୍ଗି ଦିଆଯାଏ । ତା'ପରେ ପ୍ରତ୍ୟେକ ଲୋକ ଖଣ୍ଡେ ଖଣ୍ଡେ ଅଧାପୋଡ଼ା କାଠ ଗୋଟେଇ ଘରକୁ ଫେରନ୍ତି । ଏଇ ଦରପୋଡ଼ା କାଠ ଖଣ୍ଡକ ପୂରା ବର୍ଷକ ପର୍ଯ୍ୟନ୍ତ ଘରେ ରଖାଯାଏ । କାରଣ ଗାଁ ଗହଳିର ଲୋକମାନେ ବିଶ୍ୱାସ କରନ୍ତି ଯେ ଏଇଟି ଘରେ ଥିବା ପର୍ଯ୍ୟନ୍ତ ଜ୍ୱରରୋଗ ଘରେ ପଶିପାରେ ନାହିଁ ।

ସହରମାନଙ୍କରେ ହୋଲିର ପ୍ରାୟ ଆଠ ଦଶଦିନ ଆଗରୁ ରଙ୍ଗ, ଅବିର ଓ ପିଚକାରୀ କିଣାବିକା ପାଇଁ ଉଠାଦୋକାନମାନ ଭର୍ତ୍ତି ହୋଇଯାଏ । ସାଧାରଣତଃ ଦୁଇ ଦିନ ଧରି ହୋଲି ଉତ୍ସବ ଚାଲେ । ଗୋଟିଏ ଦିନରେ ହୋଲି-ଅଗ୍ନି ଜଳାଯାଏ, ଆଉ ଦିନକରେ ରଙ୍ଗ, ପିଚକାରୀ ମାରା ହୁଏ । ଏହାକୁ ରଙ୍ଗଖେଳ କହନ୍ତି । ବଡ଼ ବଡ଼ ସହରମାନଙ୍କରେ ରଙ୍ଗଖେଳ ଗୋଟିଏ ଦିନରେ ଶେଷହୁଏ । ସେଇଟି ମଧ୍ୟ କେବଳ ସକାଳ ଓଳି ହୁଏ । ଏହା ଗୋଟିଏ ବିଚିତ୍ର ଦୃଶ୍ୟ । ଉତ୍ସାହୀ ଲୋକମାନେ ହାତରେ ରଙ୍ଗ ପାଣି ବାଲ୍ଟି ଓ ପିଚକାରୀ ଧରି ପରସ୍ପର ଉପରେ ରଙ୍ଗ ପକାପକି ହୋଇ ଗୀତ ଗାଇ, ନାଚିନାଚି ଯାଆନ୍ତି । ଦି'ପହର ସୁଦ୍ଧା ଏସବୁ ସରିଯାଏ । ଲୋକମାନେ ଗାଧୁଆ ପାଧୁଆ ସାରି, ସଫା ଲୁଗାପଟା ପିନ୍ଧି, ହୋଲି ଉପଲକ୍ଷେ ଆୟୋଜିତ ବିଶେଷ ସଙ୍ଗୀତ ଆସରରେ ଯୋଗ ଦିଅନ୍ତି ।

ହୋଲି ସହିତ ଶ୍ରୀକୃଷ୍ଣଙ୍କର ଘନିଷ୍ଠ ସଂପର୍କ ଥିବାରୁ ମଥୁରା, ବୃନ୍ଦାବନ ପ୍ରଭୃତି ସ୍ଥାନରେ ପ୍ରସିଦ୍ଧ ଉତ୍ସବମାନ ଅନୁଷ୍ଠିତ ହୁଏ । ହୋଲି ସମୟରେ ଗୋପୀମାନଙ୍କ ସହିତ ଶ୍ରୀକୃଷ୍ଣଙ୍କର ରାସ କେଳି ହେଉଛି ସଙ୍ଗୀତର ସାରକଥା ଏବଂ ଏହାକୁ କେନ୍ଦ୍ରକରି ଅସଂଖ୍ୟ ସାହିତ୍ୟ ସୃଷ୍ଟି କରାଯାଇଛି ।

କେତେକ ଅଞ୍ଚଳରେ ହୋଲି ଉତ୍ସବର ରଙ୍ଗଢଙ୍ଗ ବଡ଼ ବିଚିତ୍ର ଧରଣର । କୃଷ୍ଣଙ୍କର ଜନ୍ମ ସ୍ଥାନ ନନ୍ଦ ଗ୍ରାମରେ ଏବଂ ରାଧାଙ୍କର ଘର ବର୍ସନାଇ'ରେ, ସ୍ତ୍ରୀଲୋକମାନେ ବାଡ଼ି ଧରି ପୁରୁଷମାନଙ୍କୁ କୌତୁକରେ ଗୋଡ଼ାନ୍ତି ଏବଂ ମଜାରେ ମଜାରେ ପିଟନ୍ତି । ପୁରୁଷ ଲୋକମାନେ ହସି ହସି

ଏଇ ମାତରୁ ବେଶ କୌତୁକ ଅନୁଭବ କଲଭଳି ଭାବଭଙ୍ଗୀ ପ୍ରକାଶ କରନ୍ତି । ରାଜସ୍ଥାନର ବାର୍‌ମର୍‌ଠାରେ ସ୍ତ୍ରୀ ପୁରୁଷ ପରସ୍ପର ଉପରକୁ ଗୋଡ଼ି ଫିଙ୍ଗା-ଫିଙ୍ଗି ହୁଅନ୍ତି । ବାରଣସୀ ଏବଂ ମୀରଘାଠାରେ ଖେଳାଳୀମାନେ ଦୁଇ ଦଳରେ ବିଭକ୍ତ ହୋଇ ପରସ୍ପର ଲାଠି ଧରି ଲଢେଇ କରନ୍ତି । ଏଇ ଲଢେଇ ବସନ୍ତ ପଞ୍ଚମୀ ଦିନ ଆରମ୍ଭ ହୋଇ ହୋଲି ପର୍ଯ୍ୟନ୍ତ ପ୍ରତିଦିନ ଦୁଇ ଘଣ୍ଟା ଧରି ଚାଲେ ଏବଂ ବେଶ ଶାନ୍ତି ଶୃଙ୍ଖଳାରେ ଶେଷ ହୁଏ । ଦୁଇ ଦଳ ପରସ୍ପର କୋଳାକୋଳି ହୋଇ ଅବିର ବୋଳାବୋଳି ହୁଅନ୍ତି । ଆଗେ ବାରଣସୀର ବିଭିନ୍ନ ପ୍ରକାର ଖଣ୍ଡା ଖେଳ, ଶିବନାଥ ସିଂହ ବାହାଦୂରଙ୍କ ନାମରେ ନାମିତ କୁସ୍ତି ଲଢ଼େଇ ଏବଂ ଦୁର୍ଗାଘାଟିର ମୁଷ୍ଟିଯୁଦ୍ଧ ତଥା କୁସ୍ତି ଲଢେଇ ଥିଲା ହୋଲିର ପ୍ରଧାନ ଆକର୍ଷଣ । ଏସବୁ ଖେଳରେ ଏତେ ଉତ୍ତେଜନା ବଢିଲା ଯେ, ଶେଷରେ କର୍ତ୍ତୃପକ୍ଷ ଏହାକୁ ବନ୍ଦ କରି ଦେବାକୁ ନିଷ୍ପତ୍ତି କଲେ । ଏବେ ମଧ୍ୟ ହୋଲି ପରଦିନ ଲୋକମାନେ ହାତରେ ଠେଙ୍ଗା, ବର୍ଚ୍ଛା, ଖଣ୍ଡା ଏବଂ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ଧରି ଲଢେଇକୁ ଗଲା ଭଳି ଶୋଭା ଯାତ୍ରା କରି ଯାଆନ୍ତି ।

ଲୋକମାନଙ୍କ ଜୀବନରେ ହୋଲିର ଅର୍ଥ କଣ ?

ହୋଲି ଉତ୍ସବରେ ଆମେ ନିତି ଦିନିଆ ଧରାବନ୍ଧା ଜୀବନକୁ ଏଡି ଦେଇ ଏବଂ ଅସୁମାରି ଅଭାବ ଅସୁବିଧା ଇତ୍ୟାଦିକୁ ଭୁଲି ଯିବାକୁ ଚେଷ୍ଟା କରି ସ୍ୱାଧୀନ ଭାବରେ ଟିକିଏ ନିଶ୍ୱାସ ମାରିବାକୁ ସୁଯୋଗ ପାଉ ।

ମୂଳ ହିନ୍ଦୀ ଏମ୍ .ଆର୍ . କାପୁର

# ନବରୋଜ

ପାର୍ସୀ ଲୋକମାନଙ୍କର ସବୁଠୁ ଖୁସିର ପର୍ବ ହେଉଛି 'ନବରୋଜ' । ଭାରତରେ ପାର୍ସୀମାନଙ୍କର ସଂଖ୍ୟା ବହୁତ କମ୍ । ସେମାନେ ହେଉଛନ୍ତି ଗୋଟିଏ ବିଚିତ୍ର ଜାତି । ଆଜିକୁ ବାର ଶହ ବର୍ଷ ପୂର୍ବେ ସେମାନେ ଧର୍ମର ଅତ୍ୟାଚାରରୁ ରକ୍ଷା ପାଇବାପାଇଁ ପାରସ୍ୟରୁ ପଳାଇ ଆସି ଭାରତରେ ଆଶ୍ରୟ ନେଇଥିଲେ । ସେମାନେ ବମ୍ବେ ଓ ଗୁଜୁରାଟର କେତେକ ସ୍ଥାନରେ ଆସି ବସବାସ କରି ରହିଥିଲେ ଏବଂ ଯଦିଓ ସେମାନେ ନିଷ୍ଠାପର ଭାବରେ ସେମାନଙ୍କର ଜୋରୋଷ୍ଟ୍ରିଆନ ଧର୍ମ ଅନୁସରଣ କରୁଥିଲେ; ତଥାପି ଏହି ନୂତନ ସ୍ଥାନରେ ଅନେକ ରୀତିନୀତିକୁ ଆପଣାର କରି ନେଇଥିଲେ ।

ପ୍ରତିବର୍ଷ ମାର୍ଚ୍ଚ ୨୧ ତାରିଖ ଦିନ ନବରୋଜ ପାଳନ କରାଯାଏ । ଏହା ଫାଜଲି ନାମକ ଗୋଟିଏ ଶ୍ରେଣୀର ପାର୍ସୀମାନଙ୍କର ନବବର୍ଷ ରୂପେ ବିବେଚିତ ହେଉଥିଲେ ମଧ୍ୟ ସବୁ ଶ୍ରେଣୀର ପାର୍ସୀ ଲୋକ ଏହି ଉତ୍ସବରେ ଆନନ୍ଦର ସହିତ ଭାଗ ନିଅନ୍ତି । ସେମାନେ ପରସ୍ପରକୁ ସମ୍ଭାଳନ୍ତି ଏବଂ ଅଗ୍ନି ମନ୍ଦିରରେ ଏକାଠି ହୋଇ ଧନ୍ୟବାଦ ଜଣାନ୍ତି । ୨୧ ମାର୍ଚ୍ଚ ହେଉଛି ବସନ୍ତ ଋତୁର ପ୍ରଥମ ଦିନ ତଥା ସୂର୍ଯ୍ୟଙ୍କର ମହାବିଷୁବ । ତେଣୁ ଏଇ ଦିନଟିକୁ ବର୍ଷ ଆରମ୍ଭ ବୋଲି ବିଚାର କରିବା ଯୁକ୍ତିଯୁକ୍ତ । ଏଇ ଋତୁରେ ଅଶୋକ ଓ ଆମ୍ବ ଗଛରେ ବଉଳ ଧରେ । ଶୀତ ଋତୁରେ ଯେଉଁ ଗଛଗୁଡିକ ପତ୍ରଝଡା ହେଇଥାଆନ୍ତି, ସେଗୁଡିକରେ ଚିକ୍ ଚିକ୍ ନୂଆ ପତ୍ର କଅଁଳେ । ଗାଆଁ ଭୂଇଁ ନୂତନ ସୌନ୍ଦର୍ଯ୍ୟରେ ହସି ଉଠେ ।

ପାରସ୍ୟ ଦେଶର 'ଏଓ୍-ଇ-ନାଓ-ରଜ୍'ରୁ ନବରୋଜ ହୋଇଛି ବୋଲି ଜଣାଯାଇଥିଲେ ମଧ୍ୟ ଏ କଥାଟା ସ୍ପଷ୍ଟ ନୁହେଁ । ମାତ୍ର ଆଚିମେନିଆ ରାଜାମାନଙ୍କର ଉଆସ ପାର୍ସିପୋଲିର ଭଗ୍ନାବଶେଷରେ ଥିବା କାରୁକାର୍ଯ୍ୟରୁ ଜଣାଯାଏ ଯେ, ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ଯେତେବେଳେ ସାଇରସ ଓ ଦାରିଅସ୍ ବିରାଟ ପାରସ୍ୟ ସାମ୍ରାଜ୍ୟରେ ରାଜତ୍ୱ କରୁଥିଲେ, ସେତେବେଳେ ଏହି ଉତ୍ସବ ପାଳନ କରାଯାଉଥିଲା । ଫିରଦଶୀ ରାଜବଂଶର ବିବରଣୀ ଲେଖାଥିବା ପୁସ୍ତକ 'ଶାହ ନମେ-ବୁକ୍ ଅଫ୍ କିଙ୍ଗସ୍'ରେ ଉଲ୍ଲେଖ ଅଛି ଯେ, ରଜା ଜାମସେଦ୍ ତାଙ୍କ ରାଜତ୍ୱ କାଳରେ ବସନ୍ତ ଋତୁର ପ୍ରଥମ ଦିନ ପରିଷଦମାନଙ୍କ ଗହଣରେ ସିଂହାସନରେ ବସି ନିଜର ଗୌରବ

ପାଳନ କରିବା ସଙ୍ଗେ ସଙ୍ଗେ ପ୍ରକୃତିର ନବଜୀବନ ଉତ୍ସବ ପାଳନ କରୁଥିଲେ ।

ଅନ୍ୟାନ୍ୟ ପରିବାର ଭଳି, ଏଇ ଉତ୍ସବର ଆୟୋଜନରେ ପାର୍ସୀ ପିଲାମାନଙ୍କର ବିଶେଷ ଭୂମିକା ଥାଏ ।

ପିଲାଦିନେ ନବରୋଜ ଆୟୋଜନରେ ଲାଗି ପଡ଼ିବାରେ ଯେ କି ଆନନ୍ଦ, ସେ କଥା ମୋର ଏବେ ବି ମନେ ଅଛି । ଘରଦ୍ୱାର ସଫାସୁତରା କରିବାରେ ସାହାଯ୍ୟ କରିବା ଘରର ଅଳିଆ ଅସନା ଓ ଅଳନ୍ଧୁକୁ ଝାଡ଼ୁ ଦେବା, ଦୁଆର ଝରକା ଭାଙ୍ଗି ଯାଇଥିଲେ ତାକୁ ମରାମତି କରିବା ଓ ଘରର ଚଟାଣ ତଥା ଆସବାବ ପତ୍ରଗୁଡ଼ିକୁ ପୋଛାପୋଛି କରି ଝକ୍‌ଝକ୍ କରିବା ଇତ୍ୟାଦି ସବୁ ମନେ ଅଛି । ପରିବାରର ସମସ୍ତଙ୍କ ପାଇଁ ନୂଆ ଲୁଗାପଟା ବରାଦ ଦିଆଯାଏ । ଏହା ଭିତରେ ଥାଏ ସ୍ତ୍ରୀ ଲୋକମାନଙ୍କ ପାଇଁ ଛୁଞ୍ଚି ସୂତାର କାରୁକାମ କରା ନୂଆ ଶାଢ଼ୀ ଏବଂ ପିଲାମାନଙ୍କ ପାଇଁ ଜାମା ଯୋଡ଼ା ।

ପାରସୀ ଲୋକମାନେ ଆମିଷ ଭୋଜୀ । ନବରୋଜର କିଛିଦିନ ଆଗରୁ ମୋର ମାଆ ନିଜେ ବଜାରକୁ ଯାଇ କୁକୁଡ଼ା ମାଂସ, ମାଛ, ବାଦାମ, ମସଲା ମସଲି ଓ ଫଳ ଇତ୍ୟାଦି ବରାଦ କରି ଆସନ୍ତି । ସେଦିନ ଘର ଦୁଆର ମୁହଁ ସଜାଇବା ପାଇଁ ଗୋଲାପ ଓ ଯୁଇ ଫୁଲର ମାଳ ବରାଦ କରିବାକୁ ଫୁଲ ଦୋକାନକୁ ଯିବା ଦରକାର ପଡ଼େ ।

ନବରୋଜ ଦିନ ପ୍ରତ୍ୟେକ ଲୋକ ବଡ଼ି ଭୋରରୁ ଉଠି ଗାଧୁଆ ପାଧୁଆ ସାରି ନୂଆ ଲୁଗା ପଟା ପିନ୍ଧନ୍ତି । ପରିଷ୍କାର ପାଣିରେ ଘରଦ୍ୱାର ଧୋଇ ସଫା କରାଯାଏ । ତା'ପରେ ଘରର ଦୁଆର ମୁହଁ ଓ ପାହାଚଗୁଡ଼ିକୁ ଚକ୍‌ଖଡ଼ି ଓ ରଙ୍ଗୀନ ମୁରୁଜରେ ସଜାଇବା କାମରେ ପିଲାମାନେ ଲାଗିପଡ଼ନ୍ତି । ଏଇଟି ଠିକ୍ 'ରଙ୍ଗଲି' ପର୍ବ ଭଳି; କିନ୍ତୁ ହାତରେ ମନଇଚ୍ଛା ଏଣୁ ତେଣୁ ଚିତ୍ର କରା ନ ଯାଇ ସରୁ ସରୁ କଣା କରାଯାଇ ଥିବା ଟିଣ ପଟାର ଛାଞ୍ଚରେ ମାଛ, ଚଢ଼େଇ, ମୟୂର, ପ୍ରଜାପତି ଓ ତାରା ଇତ୍ୟାଦି ଚିତ୍ର ଅଙ୍କା-ଯାଏ । ଆମକୁ ଏଇଭଳି ଚୋକେଇଏ ଲେଖାଁ ଟିଣ ଛାଞ୍ଚ ଦିଆଯାଏ ଏବଂ ଆମେ ସେଥିରେ ଖୁବ୍ ସାବଧାନରେ ଧଳା ମୁରୁଜ ଭର୍ତ୍ତି କରୁ, ରଙ୍ଗ ବେଶି ହେଲେ କଣାଗୁଡ଼ିକ ବନ୍ଦ ହୋଇଯିବ ଓ ଚିତ୍ରର ନକ୍ସା ଖରାପ ହୋଇଯିବ । ପୁଣି ରଙ୍ଗ କମ ହେଲେ ଚିତ୍ର ପରିଷ୍କାର ଉଠିବ ନାହିଁ । ତେଣୁ ଛାଞ୍ଚରେ ଆମକୁ ଠିକ୍ ମାପରେ ରଙ୍ଗ ଭରିବାକୁ ପଡ଼େ । ବେଳେବେଳେ ସେଇ ଟିଣ ଛାଞ୍ଚରେ ଭିନ୍ନ ଭିନ୍ନ ରଙ୍ଗର ଅବିର ଭର୍ତ୍ତି କରିବାକୁ ଜାଗା ଥାଏ,





ଯାହା ଦ୍ୱାରା କି ମାଛର ଆଖି, ପ୍ରଜାପତିର ଡେଣା ଇତ୍ୟାଦି ଅଲଗା ଦେଖାଇ ଦେବ ବା ନାଲି, ନୀଳ, ସବୁଜ ରଙ୍ଗରେ ଚିତ୍ରେଇ ଦେବ ।

ଟୋକେଇଏ ଲେଖାଁ ଚୁନା ଫୁଲ ଓ ଗୋଲାପ, ଯୁଇର ମାଳ ପିଲାମାନେ ସାଇକେଲରେ ଆଣି ଦେଇଯାଆନ୍ତି ଏବଂ ଆମର କାମ ହେଉଛି ସେ ସୁଗନ୍ଧିତ ସତେଜ ଫୁଲ ମାଳଗୁଡିକ ନେଇ କାନ୍ଥରେ ପିଟା ହୋଇଥିବା କଣ୍ଟାରେ ଝୁଲାଇବା । ଆମେ ଫୁଲଦାନିରେ ଓ ପାଣି କଳସୀରେ ସେଇ କଟା ଫୁଲଗୁଡ଼ିକୁ ପକେଇ ଦେଉ । ଫଳରେ ପବନରେ ଫୁଲର ସୁଗନ୍ଧ ଭସି ଆସି ଘର ମହକାଇ ଦିଏ ଏବଂ ବସନ୍ତ ଋତୁକୁ ମନେ ପକାଇ ଦିଏ ।

ସବୁ ପାର୍ସୀ ପର୍ବରେ ଖିଆପିଆ ହେଉଛି ପ୍ରଧାନ । ପାର୍ସୀ ଖାଦ୍ୟ ପଶ୍ଚିମ-ଏସିଆ ଓ ଭାରତୀୟ ରନ୍ଧା ବଢ଼ା କାଇଦାର ଏକ ମିଶାମିଶି ଢଙ୍ଗରେ ତିଆରି କରାଯାଏ । ମୋ ମାଆ ସବୁବେଳେ ଦୁଇ ପ୍ରକାର ଜଳଖିଆ ତିଆରି କରୁଥିଲେ ଏବଂ ଯେଉଁଗୁଡ଼ିକୁ ଆମେ ସବୁ ପର୍ବରେ ଖାଉଥିଲୁ । ପ୍ରଥମଟି ସୁଜି, ଚିନି ଓ କ୍ଷୀରରେ ତିଆରି, ତାକୁ କୁହାଯାଏ 'ରବା' । ତାହା ବହଳିଆ ଲହୁଣୀ ଭଳି ହେଲା ପର୍ଯ୍ୟନ୍ତ ତାକୁ ଚୁଲୀରେ ବସାଇ ଘଣ୍ଟା ଯାଉଥାଏ । ତାପରେ ବାସନା ପାଇଁ ସେଥିରେ ଗୋଲାପ ଜଳ ଦିଆଯାଏ ଏବଂ ଯାଇଫଳକୁ ଚୂରି ଛିଞ୍ଚାଯାଏ । ତାକୁ ସୁନ୍ଦର ସୁନ୍ଦର ଗ୍ଲାସରେ ଢଳାଯାଏ ଏବଂ ତା ଉପରେ ଭଜା ବାଦାମ ଓ କିସ୍‌ମିସ୍ ଘୋଡେଇ ଦିଆଯାଏ । ଏଥର ଏଇ 'ରବା' ଉପରେ ପରିଷ୍କାର ଗାମୁଛାରେ ଘୋଡେଇ ଉପହାର ସ୍ୱରୂପ ବନ୍ଧୁବାନ୍ଧବଙ୍କ ଘରକୁ ପଠାଯାଏ, ଦ୍ୱିତୀୟ ପ୍ରକାର ଖାଦ୍ୟ ହେଉଛି, ଭଜା ସିମେଇକୁ ଚିନି ସିରାରେ ଛାଣି ତା' ଉପରେ ଯାଇଫଳ ଗୁଣ୍ଡ ଓ କିସ୍‌ମିସ ଛିଞ୍ଚାଯାଏ ।

ଜଳଖିଆ ପରେ ପରିବାରର ସବୁଲୋକ ନିକଟସ୍ଥ ଅଗ୍ନି ମନ୍ଦିରକୁ ଯାଆନ୍ତି । ସେଠାରେ ପୁରୋହିତଙ୍କ ଦ୍ୱାରା ଠାକୁରଙ୍କୁ 'ଯାସନ' ବା ପ୍ରାର୍ଥନା କରାଯାଏ । ପ୍ରତ୍ୟେକ ଲୋକ ନୂଆ ଲୁଗା ପିନ୍ଧନ୍ତି ଏବଂ ଖଣ୍ଡିଏ ଚନ୍ଦନ କାଠ ନେଇ ହୋମ-ନିଆଁରେ ପକାନ୍ତି, ପାରସୀମାନେ ମନ୍ଦିରରେ ଥିବା ବେଳେ ବା ପ୍ରାର୍ଥନା କରୁଥିବା ବେଳେ ନିଜର ମୁଣ୍ଡକୁ ଘୋଡେଇ ଥାଆନ୍ତି । ପିଲାମାନେ ସୁନା ବା ରୂପାର ବୁଟିଦିଆ ଗୋଲ ଟୋପି ପିନ୍ଧନ୍ତି, ବୟସ୍କ ଲୋକମାନେ କଳା ମଖମଲ କନାର ଟୋପି ପିନ୍ଧନ୍ତି । ସ୍ତ୍ରୀ ଲୋକମାନେ ସେମାନଙ୍କର ଶାଢ଼ୀକୁ ଓଢ଼ଣା ଭଳି ମୁଣ୍ଡ ଉପରକୁ ଟାଣି ଦିଅନ୍ତି । ପ୍ରାର୍ଥନା ପରେ ଲୋକମାନେ ପରସ୍ପର କୋଳା କୋଳି ହୁଅନ୍ତି ଏବଂ 'ସାଲ ମୁବାରକ' କହି ଅଭିନନ୍ଦନ ଜଣାନ୍ତି ।

ଦିନଟିସାରା ଘରେ ସାଙ୍ଗସାଥୀମାନଙ୍କର ଯିବାଆସିବା ଲାଗିଥାଏ । ଘରକୁ ଯିଏ ବୁଲିଆସେ ତାକୁ କିଛି ମିଠା ଏବଂ ଗିଲାସେ 'ଫାଲୁଦା' ଖାଇବା ପାଇଁ ଦିଆଯାଏ । ଗୋଲାପ ଅତରଦିଆ ଏକ ବିଶେଷ ଧରଣର ସିମେଇକୁ ମିଠା ଏବଂ କ୍ଷୀରରେ ରାନ୍ଧି,ତାକୁ ଥଣ୍ଡାକରି 'ଫାଲୁଦା' ପ୍ରସ୍ତୁତ କରାଯାଏ । ପ୍ରତ୍ୟେକ ପାର୍ସୀ ପରିବାରରେ ଗୋଟିଏ ରୂପା ଥାଳିରେ କିଛି ଗୋଲାପ ଫୁଲ ପାଖୁଡା, ନଡିଆ, ମୁଣ୍ଡରେ ଲଗାଇବା ପାଇଁ ତିଳକ ଏବଂ କିଛି କଞ୍ଚା ଚାଉଳ ରଖାଯାଇଥାଏ । ଆଉ ମଧ୍ୟ ସେଇ ଥାଳିରେ ରୂପା ତିଆରି ସରୁ ଅତରଦାନିରେ, ଗୋଲାପଜଳ ଭର୍ତ୍ତି କରି ରଖାଯାଇଥାଏ । ଘରେ କେହି ଅତିଥି ଆସି ପହଞ୍ଚିବା ମାତ୍ରେ ତାଙ୍କ ଉପରକୁ ଏହା ଛିଞ୍ଚାଯାଏ । ଦୁଆର ମୁହଁରେ ପାହାଚ ଉପରେ ଅଙ୍କା ଯାଇଥିବା ଚିତା ସେତେବେଳକୁ ଗୋଡରେ ଘଷି ହୋଇ ଲିଭିଲିଭି ହୋଇ ଯାଇଥିଲେ ମଧ୍ୟ ସେଥିପ୍ରତି କାହାରି ନଜର ନ ଥାଏ ।

ଘରର ସ୍ତ୍ରୀଲୋକମାନଙ୍କର ଏକମାତ୍ର ଦାୟିତ୍ୱ ହେଉଛି ମଧ୍ୟାହ୍ନ ଭୋଜନ ତିଆରି କରିବା । ହଳଦୀ ପକା ପଲାଉ ଭାତ, କଦଳୀ ପତ୍ରରେ ବାନ୍ଧି ବାମ୍ଫରେ ସିଝାଯାଇଥିବା ମାଛ, ଅଥବା ଖଟା ମିଠା ଦିଆ ମାଛ ଝୋଳ, ଚିନାବାଦାମ ଦିଆ କୁକୁଡାମାଂସ ତରକାରୀ, ସାଧା ଅରୂଆ ଭାତ ଏବଂ ମୁଗ ଡାଲି ଇତ୍ୟାଦି ଶୁଭ ବୋଲି ବିଚାର କରାଯାଏ । ପର୍ବଟିକୁ ଠିକ୍ ଭାବରେ ପାଳିବାକୁ ସକ୍ଷମ ନଥିବା ଅଭାବଗ୍ରସ୍ତ ପରିବାରର ଲୋକଙ୍କୁ ବେଳେବେଳେ ଖାଇବାକୁ ଦିଆଯାଏ । ଗରୀବ ପାର୍ସୀ ପରିବାରର ଲୋକଙ୍କୁ ପିଲାମାନେ ଉପହାର ସ୍ୱରୂପ ଖାଦ୍ୟଦ୍ରବ୍ୟ, ଲୁଗାପଟା ଇତ୍ୟାଦି ବାଣ୍ଟନ୍ତି । ଏହା ଦ୍ୱାରା ପିଲାଦିନରୁ ସେମାନେ ଅନ୍ୟକୁ କିଛି ଦାନ କରିବାର ଅଭ୍ୟାସ ଶିକ୍ଷାକରନ୍ତି ।

ପୂର୍ବେ ଯେତେବେଳେ ପାରସ୍ୟରେ ନବରୋଜ ପାଳନ କରାଯାଉଥିଲା, ନବବର୍ଷର ପୂର୍ବଦିନ ସନ୍ଧ୍ୟାରୁ ଆମୋଦ ପ୍ରମୋଦ ଆରମ୍ଭ ହୋଇ ପନ୍ଦର ଦିନ ପର୍ଯ୍ୟନ୍ତ ଚାଲୁଥିଲା । ନବରୋଜ ଦିନ ସକାଳୁ ଗୋଟିଏ ଟେବୁଲ ଉପରେ ଧଳା ଲୁଗା ଖଣ୍ଡିଏ ବିଛେଇ ତା' ଉପରେ ବିଧି ଅନୁଯାୟୀ 'ସ' ଅକ୍ଷରରେ ଆରମ୍ଭ ହୋଇଥିବା ସାତଟି ଜିନିଷ ସଜେଇ ରଖାଯାଉଥିଲା । ଏଗୁଡିକ ହେଉଛି ସେଓ, ସବ୍‌ଜି (ପରିବାପତ୍ର), ସିର (ରସୁଣ), ସାମ୍ବୋଲ (ଗୋଟିଏ ପ୍ରକାର ଫୁଲ ଗଛ ଏଥିରେ ବଲ୍ ଭଳି ଗୋଲ ଗୋଲ ଫୁଲ ଫୁଟେ), ସେର୍‌କିହ (ଖଟା), ସାମୁଖ ଏବଂ ସମନୋଲ । ଶେଷ ଦୁଇଟି ହେଉଛି ଦୁଇପ୍ରକାର ସୁଗନ୍ଧଯୁକ୍ତ ଗଛ । ଏହା ଇରାନରେ ମିଳେ, ଆଉ ମଧ୍ୟ ଟେବୁଲ ଉପରେ ଗୋଟିଏ ପାତ୍ର ରଖି, ସେଥିରେ ପରିଷ୍କାର ପାଣିରେ

ଗୋଟିଏ ଜୀଅନ୍ତା ମାଛ ଛାଡ଼ି ଦିଆଯାଇଥାଏ ଏବଂ ସେ ମାଛଟି ପହଁରୁଥାଏ । ତା’ ଛଡ଼ା ଘରର ପ୍ରତ୍ୟେକ ଲୋକଙ୍କ ପାଇଁ ଅଲଗା ଅଲଗା ଗୋଟିଏ ଲେଖାଁ ଦର୍ପଣ ଓ ମହମବତୀ ଟେବୁଲ ଉପରେ ରଖାଯାଇଥାଏ । ସୂର୍ଯ୍ୟ ଯେମିତି ନିଜର ଗତି ପରିବର୍ତ୍ତନ କରି ବିଷୁବ ରେଖା ମଧ୍ୟରେ ପ୍ରବେଶ କରନ୍ତି, ଠିକ୍ ସେତିକିବେଳେ ପାରସ୍ୟର ରାଜାଙ୍କ ରାଜପ୍ରସାଦ ଉପରୁ ନବବର୍ଷ ଆରମ୍ଭ ହେଲା ବୋଲି ଘୋଷଣା କରି ଗୋଟିଏ ତୋପ ଫୁଟାଯାଏ । ଏତିକି ବେଳେ ସାରା ପରିବାରର ଲୋକେ ଟେବୁଲ ଚାରିପାଖରେ ଘେରି-କରି ଠିଆ ହୋଇ ପରସ୍ପରକୁ ନୂଆ ବର୍ଷର ଶୁଭେଚ୍ଛା ଜଣାନ୍ତି । ମହମବତୀଗୁଡ଼ିକ ଜଳାଯାଏ ଏବଂ ସେଗୁଡ଼ିକ ଯେପରି ପବନରେ ଲିଭି ନ ଯାଏ, ସେଥିପାଇଁ ଖୁବ୍ ଯତ୍ନ ନିଆଯାଏ । ବତି ଲିଭିଗଲେ, ତାହା ଅଶୁଭ ଏବଂ ଦୁର୍ଯୋଗ ଆସି ପହଞ୍ଚିବ ବୋଲି ଲୋକେ ଭାବନ୍ତି । ତା’ପରେ ମିଠେଇ ବଣ୍ଟା-ଯାଏ ଏବଂ ଚକ୍‌ଚକ୍ ସଫା ପିତ୍ତଳ ହାଣ୍ଡିରୁ ଚା’ ବଣ୍ଟାଯାଏ ।

ବିଭିନ୍ନ ଆକାରର ଛୋଟ ଛୋଟ ମାଟି ପଲମରେ ଗହମ ଚାରା ତିଆରି କରିବା ହେଉଛି ଆଉ ଗୋଟିଏ ବିଧି । ପଲମରେ ମାଟି ଭର୍ତ୍ତି କରି ସେଥିରେ ପାଣି ଦେଇ ତାକୁ ଭଲ ଭାବରେ ଭିଜେଇ ଦିଆଯାଏ । ତା’ପରେ ସେଥିରେ ଗହମ ବିହନ ବୁଣି ପଲମଗୁଡ଼ିକ ନେଇ ଖରାରେ ରଖାଯାଏ । ମଝିରେ ମଝିରେ ସେଥିରେ ପାଣି ଦେଇ ମାଟି ଓଦା ରଖାଯାଏ । ନବବର୍ଷ ପୂର୍ବଦିନ ସନ୍ଧ୍ୟା ସୁଦ୍ଧା ଗଛଗୁଡ଼ିକ ପ୍ରାୟ ପଲମର ଫଦ ଉପରେ ୧୭-୧୮ ସେଣ୍ଟିମିଟର ଉଚ୍ଚ ହୋଇଯାଏ । ଅଧିକ ବଢ଼ି ଯାଇଥିବା ଗଛର ସାଗୁଆ ପତ୍ରଗୁଡ଼ିକ ଯନ୍ତ୍ରର ସହିତ ଉପରୁ ଉପରୁ କାଟି ସବୁ ଗଛକୁ ସମାନ ଉଚ୍ଚରେ ରଖାଯାଏ । ପଲମଗୁଡ଼ିକ ଘର ଥାକରେ, ଟେବୁଲ ଉପରେ, ଝରକାରେ, ଏମିତି ଘରର ଚାରିଆଡ଼େ ରଖି ଦିଆଯାଏ । ନୂଆ ଜୀବନ ଏବଂ ସୁଖର ଚିହ୍ନ ସ୍ୱରୂପ ପରିବାରର ପ୍ରତ୍ୟେକ ଲୋକପାଇଁ ଗୋଟିଏକରି ପଲମ ରଖା-ଯାଏ । ନବରୋଜ ପରେ ତ୍ରୟୋଦଶ ଦିନଟି ହେଉଛି ଛୁଟିଦିନ ଏବଂ ଏଇ ଦିନ ଲୋକମାନେ ହାତରେ ଗହମ ଚାରା ଥିବା ପଲମଗୁଡ଼ିକ ଧରି ନିଜ ନିଜ ଘରୁ ଦୁଆଡ଼ଳି ଛୁଟନ୍ତି । ସେ ଦେଶରେ ପାଣି ମହରଗ ହୋଇଥିବାରୁ ଏବଂ ଗଛଲତା କମ ଥିବାରୁ, ଏ ଦୁଇଟିଯାକ ଉଦ୍ଦେଶ୍ୟରେ ସମ୍ମାନ ଜଣାଇ ପଲମଗୁଡ଼ିକୁ ସେମାନେ ସହର ବାହାରେ ଥିବା କୌଣସି ନଦୀ ବା ଝରଣା ପାଣିରେ ଫିଙ୍ଗି ଦିଅନ୍ତି । ପରିବାରର ଲୋକେ ସେଇ ଝରଣା ବା ନଈ କୂଳରେ ବଣଭୋଜି ନିମନ୍ତେ ଆସନ ପକାନ୍ତି । ସେ ଦିନଟି ସେମାନେ ମଉଜରେ କଟାନ୍ତି । ଏସବୁ ଉତ୍ସବ କିନ୍ତୁ ଭାରତ ପାଇଁ ଉପଯୋଗୀ ନୁହେଁ ।

କାରଣ ଏଠାରେ ବସନ୍ତ ଋତୁରେ ଗଛ ଲତା ଓ ମାଇଲ ମାଇଲ ଧରି ସ୍ଥଳ ଭାଗ ସବୁଜ ଶୋଭାରେ ଝଲମଲ କରି ଉଠେ । ଏଇ ଦିବସ ପାଇଁ ଅଧିକ ଉପଯୋଗୀ ବିଧିବିଧାନମାନ ଏବେ ଯୋଡ଼ା ଗଲାଣି ।

ପ୍ରାର୍ଥନା କରିବା, ପରସ୍ପର ଅଭିନନ୍ଦନ ଜଣାଇବା, ଉପହାର ଓ ମିଠେଇ ଦିଆନିଆ କରିବା ଏବଂ ଘରଦ୍ୱାର ସଫାସୁତୁରା କରିବା ଇତ୍ୟାଦି ଭାରତର ପ୍ରତ୍ୟେକ ପର୍ବପର୍ବାଣିରେ ଗୋଟିଏ ସାଧାରଣ କଥା କିନ୍ତୁ ଯାହାଠାରୁ ବଡ଼କଥା ହେଉଛି, ସମତାର ଚିହ୍ନ ସ୍ୱରୂପ ସ୍ତ୍ରୀ ପୁରୁଷ ଏକାଠି ମିଳାମିଶା କରିବା ଏବଂ ସାମାଜିକ ଭେଦଭାବ ଭୁଲି ସବୁ ଶ୍ରେଣୀର ଲୋକେ ଏକାଠି ହେବା ।

ଭାରତ ଭଳି ଗୋଟିଏ ବିଶାଳ ଓ ବିଚିତ୍ର ଦେଶରେ ପର୍ବପର୍ବାଣି ଗୁଡିକ ହିଁ ସବୁଆଡର ଲୋକମାନଙ୍କୁ ବନ୍ଧୁତା ଓ ଏକତା ମଧ୍ୟରେ ହସ ଖୁସି ଆମୋଦ ପ୍ରମୋଦ ଉଦ୍ଦେଶ୍ୟରେ ଏକାଠି କରେ ।

ନର୍ଗିସ୍ ଦଲାଲ

* * * *



